# ଅସ୍ୱୀକୃତ ପରମ୍ପରା

କୋଶଲୀ ଭାଷା ସାହିତ୍ୟ ଓ ସଂସ୍କୃତିର ନୂତନ ଚର୍ଚ୍ଚା

**ଡକ୍ଟର ସନ୍ତୋଷ କୁମାର ରଥ**



ପ୍ରକାଶକ

**ଅନୁରାଗ ପ୍ରକାଶନ**

ହିଲ ଭ୍ୟୁ, ପେଲେସ୍ ଲାଇନ୍, ବଲାଙ୍ଗିର

**ପ୍ରଥମ ସଂସ୍କରଣ: ଫେବୃୟାରୀ ୨୦୦୭**

ମୁଦ୍ରଣ

**ସ୍କ୍ରିନ୍ ଗ୍ରାଫ୍**

୬୮, କୋଶଳ କଳାମଣ୍ଡଳ ମାର୍କେଟ କମ୍ପ୍ଲେକ୍ସ

ବଲାଙ୍ଗିର, ଦୂରଭାଷ: ୯୪୩୭୨୨୪୨୦୩

ମୂଲ୍ୟ: ଟ.୬୦/- ମାତ୍ର

# Asweekruta Parampara

A new treatise on Kosli Language, Literature & Culture

**Dr. Santosh Kumar Rath**



Publisher

**Anurag Prakashan**

Hill View, Palace Line, Balangir

**First Edition: Dashahara 2006**

Printed at

**Screen Graph**

68, Kosal Kalamandal Market Complex, Balangir

**Price: Rs.60/- only**

## କ୍ରମ / ପୃଷ୍ଠା





# ଅସ୍ୱୀକୃତ ପରମ୍ପରା

'ଅସ୍ୱୀକୃତ ପରମ୍ପରା' ଦୁଇଟି ଦୃଷ୍ଟିରୁ ନୂତନ । ପ୍ରଥମତଃ କୋଶଲୀ ଭାଷା ଚର୍ଚ୍ଚାକୁ ଆବେଗମୁକ୍ତ କରିବା, ଦ୍ୱିତୀୟତଃ ତଟସ୍ଥ ରହି ସତ୍ୟ ଉଦ୍‌ଘାଟନ କରିବା । ଓଡ଼ିଆ ଭାଷାଭାଷୀମାନଙ୍କୁ ଏକାଠି କରି ପ୍ରଦେଶଟିଏ ଗଢ଼ିବାର ସ୍ୱପ୍ନର ଆରମ୍ଭ ଦିନରୁ ଓଡ଼ିଆ ଭାଷା ଚର୍ଚ୍ଚା ହୋଇପଡ଼ିଛି ଏକ ଆବେଗାନ୍ୱିତ ପ୍ରସଂଗ । ଗୋଟିଏ ଜାତିର ଅସ୍ମିତାକୁ ପ୍ରତିସ୍ଥାପିତ କରିବା ପାଇଁ ସେକାଳର ରାଜନେତାଠୁଁ ଆରମ୍ଭ କରି ଲେଖକ, କବି, ପ୍ରଶାସକ, ଏମିତିକି ସାଧାରଣ ଜନତା ବି ଏହି ମହା ଆନ୍ଦୋଳନରେ ଆପଣାର ଭୂମିକା ନିଭାଉଥିଲେ । ଯେମିତି ଧରନ୍ତୁ ପ୍ରଶାସକ ବୈକୁଣ୍ଠନାଥ ପୁଝାରୀଙ୍କ କଥା । ୧୮୯୧ ଜନଗଣନା ବେଳେ ସମ୍ବଲପୁର ଅଞ୍ଚଳର ଗାଁ' ଗାଁ' ବୁଲି ଆମର ମାତୃଭାଷା ଓଡ଼ିଆ ବୋଲି ପ୍ରଚାର କରିବା କ'ଣ ଓଡ଼ିଶା ଏକତ୍ରୀକରଣ ପାଇଁ କମ୍ ଗୁରୁତ୍ୱପୂର୍ଣ୍ଣ କଥା ? କିମ୍ବା ଧରନ୍ତୁ କଳାହାଣ୍ଡିର ରାଜଦରବାରରେ ଥିବା ସେଇ ପଣ୍ଡିତ ଯିଏ ସାର୍ ଉଇଲିଅମ୍ ଗିଅରସନ୍‌ଙ୍କୁ ଭାଷାତାତ୍ତ୍ୱିକ ସର୍ବେକ୍ଷଣ ପାଇଁ ତଥ୍ୟାବଳୀ ପଠେଇବା ବେଳେ କଳାହାଣ୍ଡିର ଲୌକିକ ଭାଷାକୁ ସମ୍ପୂର୍ଣ୍ଣ ଉପେକ୍ଷା କରି ସଂସ୍କୃତାୟିତ ଓଡ଼ିଆକୁ ସେ ଅଞ୍ଚଳର ଭାଷା ବୋଲି ପଠେଇ ଦେଇଛନ୍ତି । ସମଗ୍ର ଓଡ଼ିଶାକୁ ଏକାଠି କରିବା ପାଇଁ ତାଙ୍କ ଦାନ କ'ଣ ଭୁଲିଯିବା ଉଚିତ ? ପୁଣି କବିତା ଲେଖା ଛାଡ଼ି ରାଧାନାଥ, ଫକୀରମୋହନ, ମଧୁସୂଦନ, ଗଙ୍ଗାଧର ଓ ନୀଳକଣ୍ଠ ଭାଷାଚର୍ଚ୍ଚା କରିଛନ୍ତି ଓଡ଼ିଆ ଭାଷାକୁ ବଞ୍ଚେଇବା ଓ ପ୍ରତିଷ୍ଠା କରିବା ପାଇଁ । ଏ ସମସ୍ତ କର୍ମରେ ଅଳ୍ପ ହେଲେ ବି ସେମାନଙ୍କ ଓଡ଼ିଆ ଭାଷାପ୍ରତି ଆବେଗ ଯେକୌଣସି ପାଠକ ପଢ଼ିଲେ ହିଁ ଲକ୍ଷ୍ୟ କରିପାରିବ । ସେହି ଭାଷାଚର୍ଚ୍ଚାର ଆବେଗାନ୍ୱିତ ପରମ୍ପରା ଓଡ଼ିଶାର ଅପରଭାଷିକ

ପରମ୍ପରାମାନଙ୍କୁ ଉପେକ୍ଷା କରିବା ପାଇଁ ପ୍ରେରଣା ଯୋଗାଇବା ସ୍ୱଭାବିକ । ଫଳରେ ଓଡ଼ିଶାର ଭାଷାଚର୍ଚ୍ଚାରେ ଅପରଭାଷିକ ପରମ୍ପରାର ସ୍ୱୀକୃତି ଓ ପ୍ରତିଷ୍ଠା ପାଇଁ ଆଜି ଏକ ସଂଘର୍ଷାତ୍ମକ ପରିସ୍ଥିତି ଉପୁଜିଛି । ସୁବିଧାବାଦୀ ରାଜନେତାମାନଙ୍କ ଅଜ୍ଞତା, ପ୍ରଶାସନିକ ଉଦାସୀନତା, ବୁଦ୍ଧିଜୀବୀମାନଙ୍କ ପ୍ରଚେଷ୍ଟାର ଅଭାବ, ସର୍ବୋପରି କୌଣସି ଭାଷା ସମ୍ପର୍କରେ ପଦ୍ଧତିବଦ୍ଧ ଯୋଜନା ପ୍ରଣୟନରେ ବିଳମ୍ବ ଆଜିର ଏହି ପରିସ୍ଥିତି ପାଇଁ ପୂର୍ଣ୍ଣତଃ ଦାୟୀ । କାହାକୁ ଦାୟୀ କରି ଏ ସମସ୍ୟାର ସମାଧାନ କେବେବି ଖୋଜାଯାଇ ପାରିବ ନାହିଁ, ଯଦିଓ ଅଧିକ ଚର୍ଚ୍ଚା ପାଇଁ ଅବସର ସୃଷ୍ଟି କରିବା ଛଡ଼ା ଆମପାଇଁ ଏବେ ଅନ୍ୟ କୌଣସି ବିକଳ୍ପ ନାହିଁ ।

'ଅସ୍ୱୀକୃତ ପରମ୍ପରା' କୋଶଲୀ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଏମିତି କେତୋଟି ଚର୍ଚ୍ଚାର ଲିଖିତ ରୂପ । ବିଭିନ୍ନ ଆଲୋଚନା ସଭାମାନଙ୍କରେ ପଠିତ/କଥିତ ଓ ଚର୍ଚ୍ଚିତ । ଦୁଃଖର କଥା ଏ ଚର୍ଚ୍ଚାର ସେ ସଭାରେ ହିଁ ଅପମୃତ୍ୟୁ ଘଟିଛି, ବିପୁଳ କରତାଳି ସହ ଓ ଉଚ୍ଛ୍ୱସିତ ପ୍ରଶଂସା ସହ । ଯଦିଓ ମୋର ଲକ୍ଷ୍ୟ ଆଦୌ ତାହା ନ ଥିଲା । ଅସ୍ୱୀକୃତି ପରି ଏ ଉପେକ୍ଷା ମଧ୍ୟ ମୋତେ ଅଧିକ ମର୍ମାହତ କରୁଥିଲା ସେହି ସଭାମାନଙ୍କରେ । ଆମେ ସ୍ୱୀକାର କରିନେଇଥିବା ପରମ୍ପରାକୁ ପ୍ରତିଷ୍ଠା ଦେବାପାଇଁ ଆଗଭର ନ ହେବା, ସାମାଜିକ ଜୀବନରୁ ସାଂସ୍କୃତିକ ଓ ବୌଦ୍ଧିକ ଜୀବନକୁ ଭିନ୍ନ ଭୂମିରେ ସ୍ଥାପନ କରିବା, ଫଳରେ ଏ ଦୁର୍ଭାଗ୍ୟ ଆଜି ଭାଷାଚର୍ଚ୍ଚାରେ ଆସିଛି, ତାହା ସେଠି ସ୍ପଷ୍ଟ ହୋଇଯାଉଥିଲା ।

କେତେକ ବନ୍ଧୁ କହୁଥିଲେ ଏ ସମସ୍ତ ଲେଖାକୁ କୋଶଲୀ ଭାଷାରେ ଲେଖିବା ପାଇଁ । ଏମିତିକି କେତେକ ଲେଖା କୋଶଲୀ ଭାଷାରେ ହିଁ ମୂଳତଃ ଲେଖା ବି ହୋଇଥିଲା । ଦୁଇଟି କାରଣରୁ ତାହା ମୋତେ ଉଚିତ ମନେହେଲା ନାହିଁ । ପ୍ରଥମତଃ କୋଶଲୀ ଭାଷା ସମ୍ପର୍କରେ ଓଡ଼ିଆରେ ଚର୍ଚ୍ଚା ଖୁବ୍ ଅଳ୍ପ । ଅଥଚ ଏହା ଅଧିକ ହେବା ଜରୁରୀ ଉଭୟ ଭାଷାର ମଙ୍ଗଳ ପାଇଁ । ଏ ପ୍ରସଙ୍ଗରେ ସବୁବେଳେ ମୋର ଗୋଟିଏ କଥା ମନେପଡ଼େ । ଜଣେ ପ୍ରାଧ୍ୟାପକ ଏ ଅଞ୍ଚଳରେ ୩୦ବର୍ଷରୁ ଅଧିକ କାଳ ଅଧ୍ୟାପନା କରି ବିଦାୟ ନେବା ଅବସରରେ କହିଲେ ଏ ଅଞ୍ଚଳର ଭାଷା ଖୁବ୍ ମଧୁର,

ସଂଗୀତମୟ । ତାଙ୍କୁ କେହିଜଣେ ସେଦିନ ପଚାରିଲେ ଆପଣ ଏ ଭାଷା ଶିଖିଛନ୍ତି । ସେ ହସିହସି ଉତ୍ତର ଦେଲେ ଆବଶ୍ୟକ ପଡ଼େନି । ସେହି ପ୍ରାଧ୍ୟାପକଙ୍କୁ ଏ ବହିଟି ଏକ ସସ୍ନେହ ଉପହାର । ଗୋଟିଏ ଭାଷାରେ କେତେ କଥା ଥାଏ ଦୀର୍ଘ ୩୩ ବର୍ଷ ଏ ଅଞ୍ଚଳରେ ରହି ସଂସ୍କୃତ ଭାଷା ପଢ଼େଇ ସେ ମହାଶୟ ଯଦି ଏ ବହିରୁ କିଛି ବୁଝିପାରିବେ ତାହା ହେବ ମୋର ଗୌରବ ।

ଦ୍ୱିତୀୟତଃ ଆମ ଭାଷା ବିଷୟରେ ଆମେ ଆଲୋଚନା କଲେ ଆମ ପାଇଁ । ତାକୁ ଆମେ ପଢ଼ିବା ପାଇଁ ଦେବା ଅପର ଭାଷାଭାଷୀମାନଙ୍କୁ । ଏମିତି ହେଲେ ଆମ ଭାଷାର ଚର୍ଚ୍ଚା ଜାରି ରହିବ ବୋଧହୁଏ ।

୧୯୮୧ରୁ ଦୀର୍ଘ ୨୫ବର୍ଷ ହେଲା ଭିନ୍ନ ଭିନ୍ନ ସ୍ଥାନରେ ଭାଷା ବିଷୟରେ, ଏ ଅଞ୍ଚଳର ସାହିତ୍ୟ ଓ ସଂସ୍କୃତି ବିଷୟରେ ମୁଁ ଯେଉଁ ମତାମତ ଦେଇଛି ତାକୁ ସଜାଡ଼ିବା ପାଇଁ ଏ ବହିଟି ଏକ ଚେଷ୍ଟା ମାତ୍ର । ସବୁଲେଖା ଏକମୁଖୀ ନ ହେବା ସ୍ୱାଭାବିକ । ତେବେ ଏ ବହିରେ ମୋର ଲକ୍ଷ୍ୟ ଗୋଟିଏ ଅଞ୍ଚଳର ସାଂସ୍କୃତିକ, ସାହିତ୍ୟିକ ଓ ଭାଷିକ ପରମ୍ପରାକୁ ନୂଆଁ ଭାବରେ ବୁଝିବା ପାଇଁ ଉପାଦାନ ଓ ଅବସର ଯୋଗାଇବା । ଭିନ୍ନ ଭିନ୍ନ ପ୍ରବନ୍ଧରେ ପ୍ରସଂଗକ୍ରମେ ଗୋଟିଏ କଥାକୁ ବାରମ୍ବାର ଲେଖିବାକୁ ହୋଇଛି । ଗୋଟିଏ ବହିରେ ପଢ଼ିବାବେଳେ ତାହା ବିରକ୍ତିକର ହୋଇପାରେ । ସୁଧୀ ପାଠକ, ସେଥିପାଇଁ କ୍ଷମାଦେବେ ବୋଲି ବିଶ୍ୱାସ । ପ୍ରସଂଗର ଆବଶ୍ୟକତା ଦୃଷ୍ଟିରୁ ମୋର ଆଉ ଗତ୍ୟାନ୍ତର ବି ନ ଥିଲା । ଆଜିର ଏ ଅବସରରେ ସେ ସମସ୍ତ ଆଲୋଚନାଚକ୍ରର ସହ ଆଲୋଚକ, ଆୟୋଜକ, ପତ୍ରିକାର ସମ୍ପାଦକ ଓ ବିଜ୍ଞ ସମାଲଲୋଚକମାନଙ୍କୁ ବିନମ୍ର କୃତଜ୍ଞତା ଜ୍ଞାପନ କରୁଛି ।

**ସନ୍ତୋଷ କୁମାର ରଥ**

# କୋଶଲୀ ଭାଷାର ସ୍ୱାତନ୍ତ୍ୟ

କୌଣସି ଭାଷାର ସ୍ୱାତନ୍ତ୍ୟ ଖୋଜିବା ଆଗରୁ ଦୁଇଟି କଥା ସ୍ଥିର ହେବା ନିହାତି ଆବଶ୍ୟକ । ପ୍ରଥମ କଥା ହେଲା ଭାଷାଟିର ମାନକ ରୂପର ବର୍ଣ୍ଣନା ଓ ବିଶ୍ଳେଷଣ, ଆଉ ଦ୍ୱିତୀୟ କଥା ହେଲା କେଉଁ ଅପର ଭାଷାଠାରୁ ଓ କାହିଁକି ଏହାର ସ୍ୱାତନ୍ତ୍ୟ ବିଚାର ଆମର ଲକ୍ଷ୍ୟ । ଆମ ଆଲୋଚନା ପରମ୍ପରାକୁ ଆଜିଯାଏ ଏଇ ଦୁଇଟି କଥା ଆଦୌ ଆସିନାହିଁ । କୋଶଲୀ କହନ୍ତୁ ବା ସମ୍ବଲପୁରୀ କହନ୍ତୁ ଏଇ ଭାଷାର ପଦ୍ଧତିବଦ୍ଧ ଭାବରେ ମାନକ ନିର୍ଦ୍ଧାରଣ, ତାର ବର୍ଣ୍ଣନା ଓ ବିଶ୍ଳେଷଣ ଆରମ୍ଭ ହୋଇନାହିଁ । ଦ୍ୱିତୀୟତଃ ଅପର ସଗୋତ୍ରୀୟ ଭାଷାଠାରୁ ବିଶେଷ କରି ଓଡ଼ିଆ ଓ ହିନ୍ଦୀ ଭାଷାରୁ ଏହାର ସ୍ୱତନ୍ତତା ଖୋଜିବାରେ ଆମର ଅଧିକ ସମୟ ଓ ଶକ୍ତି ବ୍ୟୟିତ ହୋଇଛି । କୌଣସି ସଗୋତ୍ରୀୟ ଭାଷାଠାରୁ ଅପର ଏକ ଭାଷାର ସ୍ୱାତନ୍ତ୍ୟ ଖୋଜିବା ଏକେ ତ କଠିନ କାମ, ଦ୍ୱିତୀୟରେ ଯଦି ପଦ୍ଧତିବଦ୍ଧ ସତର୍କତା ଅବଲମ୍ବନ କରା ନଯାଏ, ଏ କ୍ଷେତ୍ରରେ ସଫଳତା ମିଳିବା ଦୁରୁହ । ଗତ ଶହେ ପଚାଶ ବର୍ଷ ଭିତରେ ଓଡ଼ିଆଭାଷାର ମାନକ ରୂପ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷାକୁ ନେଇ ସ୍ଥିର କରିବା ଆରମ୍ଭ ହୋଇଛି । ଅପର ଅଞ୍ଚଳର ଭାଷାମାନଙ୍କୁ ଉପେକ୍ଷା ଓ ଅସ୍ୱୀକାର କରି ଯେଉଁ କିତାବୀ ଓଡ଼ିଆ ଭାଷାଟିଏ ତିଆରି ହୋଇଛି ଓ ହେଉଛି, ତାହା ଆମ ପାଇଁ ଏବେ ଓଡ଼ିଆ ଭାଷା । ଏହାର ପ୍ରତିପକ୍ଷରେ କୋଶଲୀ-ସମ୍ବଲପୁରୀର କେଉଁ ମାନକ ରୂପକୁ ତୁଳନା କରିବା ଓ ସ୍ୱାତନ୍ତ୍ୟ ଖୋଜିବା ଆମ ପାଇଁ ଆଜି ତାହା ପ୍ରଥମ ପ୍ରଶ୍ନ । ଆଜି ହଠାତ୍ କୌଣସି ଏକ ଅଞ୍ଚଳର ବା କୌଣସି ଏକ କାଳର କିମ୍ବା କୌଣସି ଏକ ବ୍ୟକ୍ତିର ଭାଷାକୁ କୋଶଲୀର ମାନକ ରୂପ କହିପାରିବା ନାହିଁ । ଏ ଭାଷାର ଅନ୍ତସ୍ଥ

ସୂତ୍ର ଓ ଶୃଙ୍ଖଳା ଆବିଷ୍କାର କରିବାବେଳେ ଓ ମାନକ ସ୍ଥିରକଲାବେଳେ ଏଣୁ ଅଧିକ ସତର୍କ ହେବାକୁ ହେବ । ନତୁବା ଯାହା ଓଡ଼ିଆରେ ଆଜି ଦେଖା ଦେଇଛି କେତେ ଶହ ବର୍ଷପରେ କୋଶଲୀ ଭାଷାରେ ବି ତାହାହିଁ ଦେଖାଦେବ । ଦ୍ୱିତୀୟରେ ପ୍ରାୟ ହଜାରେ ବର୍ଷର ସାଂସ୍କୃତିକ ଅବଦମନରେ ଲିପିଶୂନ୍ୟ ଏଇ ଭାଷାଟି ତାର ଅନେକ ସ୍ୱାତନ୍ତ୍ର୍ୟ ହରେଇ ହରେଇ ଚାଲିଛି । ଆଦାନ ପ୍ରଦାନ କ୍ରମରେ ପୁଣି ଅପର ଭାଷାସହ ସଂଶ୍ଳେଷଣରେ ଅନେକ ଦେଇଛି, ଅନେକ ବି ଗ୍ରହଣ କରିଛି । ଏହା ଏବେ ଉଭୟ ଭାଷାର ମୌଳିକ ସଂପତ୍ତି । ଭାଷାର ସ୍ୱାତନ୍ତ୍ର୍ୟ ଖୋଜିବାବେଳେ ଏଗୁଡ଼ିକ ଆମପାଇଁ ଅଧିକ ସ୍ପର୍ଶକାତର ବିନ୍ଦୁ । ଯେମିତି ଓଡ଼ିଆରେ ସର୍ବାଧିକ ପ୍ରଚଳିତ ବହୁବଚନ ପ୍ରତ୍ୟୟ ' ମାନେ / ପ୍ରାଚୀନ ଓଡ଼ିଆରେ ନଥିଲା । ଓଡ଼ିଆ ଗୋତ୍ରର ଅନ୍ୟ ଦୁଇଟି ଭାଷା ବଙ୍ଗଳା ଓ ଅହମିଆଁରେ ବି ନାଇଁ । ତା ବଦଳରେ ରହିଛି / ଗୁଲି / ଓ / ରା । ଏବେ ଓଡ଼ିଆରେ ବହୁବଚନ ପାଇଁ ଚଳେ / ଗୁଡ଼ିକ /ରାକ / ଓ / ମାନେ / । ଓଡ଼ିଆ ଭାଷାକୁ ' ମାନେ / ପ୍ରତ୍ୟୟ ବୋଧହୁଏ ଯାଇଛି କୋଶଲୀ ଭାଷାରୁ । ଏକଥା ପ୍ରମାଣ ପାଇଁ ଯେଉଁ ଶକ୍ତି ଓ ସାହସର ଆବଶ୍ୟକ, ଏ ଭାଷାର ଆଲୋଚକମାନଙ୍କର ତାହା ନାହିଁ । ଯଦି ବା କାଁ ଭାଁ କିଏ କେଉଁଠି କହନ୍ତି ତାକୁ ସ୍ୱୀକାର କରୁଛି କିଏ ? ପତ୍ର ପତ୍ରିକାଠୁ ଆରମ୍ଭ କରି ଗବେଷଣା ଓ ଉଚ୍ଚଶିକ୍ଷା ଯାଏଁ ଏବେ ଓଡ଼ିଆରେ ସାଂସ୍କୃତିକ ଉପନିବେଶ ବାଦ ଚାଲିଛି । ଛାଡ଼ନ୍ତୁ ସେ କଥା, ଆଜି ପାଇଁ ତାହା ଆମ ଆଲୋଚନାର ବାହାରେ । ଆସନ୍ତୁ କୋଶଲୀ ଭାଷାର କେତୋଟି ସ୍ୱାତନ୍ତ୍ର୍ୟ ବିଚାରିବା ।

କୋଶଲୀ ଭାଷାର ପ୍ରଥମ ସ୍ୱାତନ୍ତ୍ର୍ୟ ହେଉଛି ଏହାର ସ୍ୱତନ୍ତ୍ର ଧ୍ୱନି ବ୍ୟବସ୍ଥା । ଏ ଭାଷାର ଉତ୍ପାଦକ ଓ ଉପଭୋକ୍ତା ଭାବରେ ଆମେ ସମସ୍ତେ ଜାଣୁ, ଆମର ପରିଚିତ ଅପର ଭାଷାମାନଙ୍କ ଠାରୁ ଏହା ଭିନ୍ନ । ଡ଼. ପରେଶ ଚନ୍ଦ୍ର ମଜୁମଦାରଙ୍କ A Historical Phonology of Oriya (1970) ଓ ଡ଼. ମାଧବଚନ୍ଦ୍ର ସାହୁଙ୍କ Sambalpuri Phonology କୁ ତୁଳନା କଲେ ଉଭୟ ଭାଷାର ଅନେକ ଭିନ୍ନତା ଆଖିରେ ପଡ଼େ । ସ୍ୱନିମ ନିର୍ଦ୍ଧାରଣ ବିତରଣ, ଅକ୍ଷର ଗଠନର ନିୟମଠୁ ଆରମ୍ଭ କରି ସ୍ୱନିମକ୍ରମ ଯାଏଁ ଉଭୟ ଭାଷାରେ ଅନେକ ବୈସାଦୃଶ୍ୟ ରହିଛି । ସେ ସମସ୍ତର

ସବିସ୍ତୃତ ଆଲୋଚନା ଏଠାରେ ଯଦିଓ ସମ୍ଭବ ନୁହେଁ, ଦ୍ୱିସ୍ୱର କ୍ରମ ସଂପର୍କରେ ଗୋଟିଏ ଛୋଟ କଥାକୁ ଉଦାହରଣ ରୂପେ ଆଲୋଚନା କଲେ ଏକଥା ସ୍ପଷ୍ଟ ହୋଇଯିବ। କାଉ, କୁଅଁ, ଦେଉଳ ଓ କୋଇଲି, ଏଇ ଚାରୋଟି ଶବ୍ଦ ଶୁଣି ଯେ କୌଣସି କୋଶଲୀ ଭାଷା ଭାଷୀ ଲୋକ ଜାଣିଯିବ ଯେ ଏସବୁ ତା ଭାଷାର ଶବ୍ଦ ନୁହେଁ। ଯେମିତି ୟାକ୍ସ ଶବ୍ଦଟି ଶୁଣି ଅର୍ଥ ଜାଣନ୍ତୁ ବା ନଜାଣନ୍ତୁ ଆପଣ କହିପାରିବେ ଏଇଟା ଅନ୍ୟ ଭାଷାର ଶବ୍ଦ । ପ୍ରତ୍ୟେକ ଭାଷା ନିଜର ଏକ ଧ୍ୱନି ଶୃଙ୍ଖଳାରେ ବନ୍ଧା । ସେ ଭାଷାର ଭାଷାଭାଷୀ ଲୋକେ ସେଇ ଧ୍ୱନିଶୃଙ୍ଖଳାକୁ ଉତ୍ପାଦକ ଭାବରେ ଜାଣିଥାନ୍ତି ଓ ଉପଭୋକ୍ତା ଭାବରେ ଚିହ୍ନିଥାନ୍ତି । ଜଣେ ଭାଷାତତ୍ତ୍ୱବିଦ୍ ତାକୁ ନେଇ ନିୟମ ତିଆରି କରିଛି କି ନାହିଁ ତାହା ସେମାନଙ୍କ ପାଇଁ ଅର୍ଥଶୂନ୍ୟ । ଭାଷାର ସୁରକ୍ଷା ପାଇଁ ସେଇ ଭାଷାଭାଷୀମାନଙ୍କର ସଚେତନତା ହିଁ ସର୍ବପ୍ରଥମ ଓ ସର୍ବପ୍ରଧାନ ସୁରକ୍ଷା । କାଉକୁ ଆମେ କୁଆ କହୁଁ, କୂଅଁ କୁ ଚୁଆଁ, ଦେଉଳକୁ ଦଉଲ୍ ଏବଂକୋଇଲିକୁ କୁଇଲି – ଏଇଟା ବଡ଼ କଥା ନୁହେଁ। ବଡ଼କଥା ହେଲା ଆମ ଭାଷାରେ 'ଆ' ଓ 'ଉ' ସ୍ୱର ପାଖାପାଖି ରହିପାରନ୍ତି ନାହିଁ। ସେମିତି କୂଅଁ ଶବ୍ଦର 'ଉ' ଓ 'ଅ', ଦେଉଳର 'ଏ' ଓ 'ଉ', କୋଇଲିର 'ଓ' ଏବଂ 'ଇ' ପାଖାପାଖି ରହିବା ଆମ ଭାଷାର ନିଜସ୍ୱ ନିୟମ ନୁହେଁ । ଫଳରେ ଆମେ ଏହାକୁ ଭିନ୍ନ ରୂପରେ ଉଚ୍ଚାରଣ କରୁ । ଏଠି ମୁଁ ଆପଣଙ୍କୁ ପଚାରୁଛି ସଂସ୍କୃତ କୋକିଳ ଶବ୍ଦର କୋଇଲି ଠିକ୍ ନା କୁଇଲି ଠିକ୍ କିମ୍ବା ହିନ୍ଦୀ ଭାଷାର କୋଏଲ୍ ଠିକ ଏକଥା କିଏ ସ୍ଥିର କରିବ। ଏ ଅଧିକାର କାହାର ଓ କାହିଁକି ରହିଛି ? ଏଣୁ ଗୋଟିଏ ଭାଷାର ସ୍ୱାତନ୍ତ୍ୟ ବିଚାରିବାବେଳେ ଏକଥା ଯେତିକି ଭାଷାତାତ୍ତ୍ୱିକ ନୁହେଁ ତା' ଠାରୁ ଅଧିକ ସାଂସ୍କୃତିକ, ଅଧିକ ରାଜନୈତିକ । ଆମ ଭାଷାର ଧ୍ୱନି ବ୍ୟବସ୍ଥା ଯେ ଏକ ସ୍ୱୟଂସଂପୂର୍ଣ୍ଣ ଓ ଶୃଙ୍ଖଳାଧୀନ ବ୍ୟବସ୍ଥା, ଯେତେଦିନ ଯାଏ ଆମେ ତାକୁ ପ୍ରତିପାଦିତ କରିପାରିନାହୁଁ ଏଇ ଅପଉଚ୍ଚାରଣ କଥାଟି ଆମକୁ ଶୁଣିବାକୁ ପଡ଼ିବ । ଡ଼. ବିଜୟ ପ୍ରସାଦ ମହାପାତ୍ରଙ୍କ ପରି ଭାଷାତତ୍ତ୍ୱବିତ୍‌ମାନେ ଆମ ବିଶ୍ୱବିଦ୍ୟାଳୟର ପତ୍ରିକା ସପ୍ତର୍ଷିରେ ଓଡ଼ିଆରୁ କୋଶଲୀ ଓ କୋଶଲୀରୁ ଓଡ଼ିଆ ରୂପାନ୍ତରଣ ପାଇଁ କେତୋଟି ସହଜ ନିୟମ ପ୍ରଣୟନ କରିପାରୁଥିବେ ଏବଂ ଏ

ଭାଷାର ନିରପେକ୍ଷ ଧ୍ୱନିପଦ୍ଧତିର ଆଲୋଚନା ନହେବା ଯାଏ ଓଡ଼ିଆ ଶବ୍ଦରେ ହଳନ୍ତ ଯୋଗକଲେ କୋଶଲୀ ଶବ୍ଦ ହୁଏ ବୋଲି ଦୁର୍ଭାଗ୍ୟଜନକ ମନ୍ତବ୍ୟ ଦେବାପାଇଁ ଏ ଅଞ୍ଚଳର ତଥାକଥିତ ବିଦ୍ୱାନ୍‌ମାନେ ଦୁଃସାହସ କରୁଥିବେ । ଆମ ଧ୍ୱନିବ୍ୟବସ୍ଥାର ଯେ ସ୍ୱତନ୍ତ୍ରତା ରହିଛି, ତା'ର ଏକ ଦୀର୍ଘ ତାଲିକା ପ୍ରସ୍ତୁତ କରିବାହେବ ଲାଲ୍ କଇଁଫୁଲରେ ଅଳତା ଲଗାଇବା, ତାହା ଆପଣମାନେ ବି ଜାଣନ୍ତି । ଆମେ ଆଲୋଚନା କରି ଆହୁରି କେତେକ ନିୟମ ଆବିଷ୍କାର କରିପାରିବା, ଯାହା ଅଧିକ ଏକାଡ଼େମିକ୍ ପରିସରରେ ହିଁ ସମ୍ଭବ ।

ରୂପରଚନା ପ୍ରକ୍ରିୟାରେ ଆମ ଭାଷାର ସ୍ୱାତନ୍ତ୍ର୍ୟ କଣ ? କେତେକ ବିଦ୍ୱାନ୍ ଆଲୋଚକ କହିଛନ୍ତି ଆମର ଅନେକ ନୂଆଁ ରୂପିମ ଓ ପ୍ରତ୍ୟୟ ରହିଛି ଯାହା ଓଡ଼ିଆରେ ନାହିଁ । ତାର ପ୍ରତିପକ୍ଷରେ ଓଡ଼ିଆ ଭାଷାର ଆଲୋଚକମାନେ କହନ୍ତି, ଏଗୁଡ଼ିକ ଆମ ପ୍ରାଚୀନ ଓଡ଼ିଆରେ ଥିଲା, ଏବେ ତାହା କୋଶଲୀରେ ରହି ଯାଇଛି । ଆମର କେତେ ରୂପିମ ଯାହା ଓଡ଼ିଆରେ ନାହିଁ ଅଥଚ ଆମର ରହିଛି ତାର ଏକ ଅଭିଧାନ ସୃଷ୍ଟିକରି ଗବେଷଣା କରିବା ଯେଉଁ ଶ୍ରଦ୍ଧା ଓ ସମୟର ଅପେକ୍ଷା ରଖେ, ଆମ ଭାଷା ଆଲୋଚକମାନଙ୍କର ଆସିନାହିଁ । ଏମିତି ଦେଖିଲେ ଓଡ଼ିଆରେ ବି ଏକ ଶବ୍ଦର ପୁରାତାତ୍ତ୍ୱିକ ଅଭିଧାନ ନାହିଁ । ଏଣୁ ଏମିତି ଏକ କର୍ମ ଅଧିକ ଗୋଷ୍ଠୀଗତ ଓ ଆନୁଷ୍ଠାନିକ ପ୍ରଚେଷ୍ଟାରେ ହିଁ ସମ୍ଭବ । ଐତିହାସିକ ଭାଷାତତ୍ତ୍ୱ ଭିତ୍ତିରେ ଆମ ଭାଷାର ସ୍ୱତନ୍ତ୍ରତା ଖୋଜିଲେ ମୂଳରୁ ମୁଁ ଯେଉଁ କହୁଥିଲି ସଫଳତା ମିଳିବା ଦୁରୁହ ହେବ । ପ୍ରଥମତଃ ଆମଭାଷାର ଐତିହାସିକ ବିବର୍ତ୍ତନ ପ୍ରଦର୍ଶନ ପାଇଁ ଆମପାଖରେ ରହିଛି ଖୁବ୍ କମ୍ ଲିଖିତ ଉପାଦାନ ଓ ଯାହାବି ରହିଛି ଓଡ଼ିଆ ଲିପିରେ ଲେଖାହେତୁ ତାହା ମନେ ହେଉଛି ଓଡ଼ିଆର ଅଧିକ ନିକଟବର୍ତ୍ତୀ । ଦ୍ୱିତୀୟତଃ ଦୁଇଟି ଭାଷାର ସ୍ୱାତନ୍ତ୍ର୍ୟ ବିଗ୍ଭରବେଳେ ସମକାଳର ଲିଖିତ ଉପାଦାନକୁ ତୁଳନା କରିବା ଅଧିକ ଯୁକ୍ତିପୂର୍ଣ୍ଣ । ତୃତୀୟତଃ ଏତଦ୍‌ଭିନ୍ନ ଆମଭାଷାର ରୂପରଚନା ପ୍ରକ୍ରିୟାରେ ଅନେକ ମୌଳିକତା ରହିଛି, ତାକୁ ଆମେ ଆଲୋଚନା କରିପାରିବା । କେବଳ ଆମ ଭାଷାରେ ନୂତନ ରୂପିମ ନୁହେଁ, ଏ ରୂପିମ ମାନଙ୍କରେ ପ୍ରତ୍ୟୟସବୁ ଲାଗି ଆହୁରି ନୂଆଁ ନୂଆଁ ଶବ୍ଦ

ତିଆରି କରାଯାଇଛି ଓ କରା ଯାଇପାରିବ । କୋଶଲୀ ଭାଷାରେ ଶବ୍ଦଗଠନର ଏକ ନିଜସ୍ୱ ପରମ୍ପରା ରହିଛି, ତାକୁ ପ୍ରଥମେ ଆବିଷ୍କାର କରିବାକୁ ହେବ । ଯେମିତି ଦେଖନ୍ତୁ ଆମର ଧ୍ୱନି ଶବ୍ଦ ସବୁ ଯଥା :- ହଲ୍‌ହଲ୍, କର୍ କର୍, ରସ୍ ରସ୍ । ଓଡ଼ିଆରେ ଏଇ ଧ୍ୱନିଶବ୍ଦ ସବୁ ଖୁବ୍ ଅଳ୍ପ କ୍ଷେତ୍ରରେ ବ୍ୟବହୃତ, ଏହାର ସଂଖ୍ୟା ବି ସୀମିତ । ଆମ ଭାଷାରେ ଏହା ବହୁଳ ଭାବରେ ଓ ବହୁ ପରିମାଣରେ ବ୍ୟବହୃତ । ଏ ଶବ୍ଦମାନଙ୍କୁ ଆମଭାଷାରେ କ୍ରିୟା ଭାବରେ ମଧ୍ୟ ବ୍ୟବହାର କରିବାର ସମ୍ଭାବନା ରହିଛି । ଯେମିତି

୧ ) ଭାତ୍ ତୁନ୍ ହଲ୍‌ହଲ୍‌ଉଛେ ।
୨ ) କୁକ୍‌ରା କର୍‌କର୍‌ଉଛେ ।
୩) ମୋର୍ ଦିହିମୁଡ୍ ରସ୍‌ରସଉଛେ ।

ଆମ ଭାଷାର ଏହା ଏକ ନିଜସ୍ୱ ସମ୍ଭାବନା ଯାହାର ପ୍ରୟୋଗ ଓଡ଼ିଆ ଭାଷାରେ ଶୂଚୀବାୟୁଗ୍ରସ୍ତ ଶିକ୍ଷିତ ମହଲରେ ଆସ୍ତେ ଆସ୍ତେ ଲୋପ ହେବାକୁ ଯାଉଛି । ରୂପରଚନା ସଂପର୍କରେ ଆଉ ଏକ କଥା କହି ଆମେ ଆଲୋଚନାର ଶେଷଅଂଶକୁ ଆସିବା । କୋଶଲୀ ଭାଷାରେ କେତୋଟି ଅବ୍ୟୟ ରହିଛି, ଯାହା ଆମ ଭାଷାକୁ ଅଧିକ ଅର୍ଥପୂର୍ଣ୍ଣ, ଓଜସ୍ୱିନୀ ଓ ଭାବ ବିନିମୟକ୍ଷମ ହେବାପାଇଁ ସହାୟକ ହେଉଛି । ଉଦାହରଣ ପାଇଁ ମୁଁ ଆପଣଙ୍କୁ ତିନୋଟି ଅବ୍ୟୟ ମନେ ପକାଇବା ପାଇଁ ଅନୁରୋଧ କରୁଛି । ସେଗୁଡ଼ିକ ହେଲା ଭାଏଲ୍, ନ ଏବଂ ତାଏଲ୍ । ଦୟାକରି କେତୋଟି ବାକ୍ୟ ଶୁଣନ୍ତୁ ଓ ମନେମନେ ଓଡ଼ିଆରେ ଅନୁବାଦ ପାଇଁ ଚେଷ୍ଟା କରନ୍ତୁ । ଆପଣ ଦେଖିବେ ଆମ ଭାଷାର ବାକ୍ୟ ସବୁରେ ଥିବା ଅର୍ଥ ଓ ଭାବକୁ ଓଡ଼ିଆ ଭାଷାରେ ଆପଣ ଭାଷାନ୍ତର କରିପାରୁ ନାହାନ୍ତି । ଦୟାକରି ମନେ ମନେ ଅନୁବାଦ କରିବାପାଇଁ ପୁଣିଥରେ ଅନୁରୋଧ କରୁଛି ।

୧ ) ସେ ଘରକେ ଯିବା ଭାଏଲ୍ ?
୨ ) ସେ ଭାଏଲ, ଘରକେ ଯିବା ?
୩) ରାମ ନ ରାବନ୍ କେ ମାରବେ ।
୪ ) ରାମ୍ ରାବନ୍ କେ ନ ମାରବେ ।
୫ ) ରାମ୍ ରାବନ୍ କେ ମାରବେନ ।
୬) ରେଲ୍‌ଗାଡ଼ି ଆସ୍‌ବା ତାଏଲ୍ ।

ଏମିତି ଅନେକ ବାକ୍ୟ ଓ ତାର ରୂପାନ୍ତରଣ ଓ ପ୍ରଜନନଶୀଳ ବୟାକରଣିକ ପ୍ରକ୍ରିୟା ମଧ୍ୟରେ ଆମ ଭାଷାର ସ୍ୱତନ୍ତ୍ରତା ଓ ମୌଳିକତା ଅନ୍ତର୍ନିହିତ । କେବଳ ବର୍ଣ୍ଣନାତ୍ମକ ବିଚାରରେ ଏସବୁ ସହଜରେ ଧରାପଡ଼େ ନାହିଁ । ଏଣୁ ସ୍ଥୂଳ ଦୃଷ୍ଟିରେ ଲକ୍ଷ୍ୟକଲେ ଓଡ଼ିଆ ଭାଷାରୁ କୋଶଲୀ ଭାଷାର ପାର୍ଥକ୍ୟ ଖୁବ୍ କମ୍ କେତୋଟି ଶବ୍ଦ ଓ ପ୍ରତ୍ୟୟଗତ ମନେହୁଏ । ଆଜି ଏଇ ଭାଷାର ସ୍ୱତନ୍ତ୍ରତା ଖୋଜିଲାବେଳେ ଅଧିକ ସୂକ୍ଷ୍ମ ଓ ପଦ୍ଧତିବଦ୍ଧ ବିଚାରହିଁ ଆମର ସହାୟକ ହେବ । ପ୍ରୋତ୍ସାହନ ଏଇ ଭାଷାର ବିକାଶକୁ ତ୍ୱରାନ୍ୱିତ କରିପାରେ କିନ୍ତୁ ଆବେଗାତ୍ମକ ଭାବପ୍ରବଣତା କ୍ଷତି ହିଁ କରିବ ।

କେତେକ ବିଦ୍ୱାନଙ୍କର ଧାରଣା ଯେ କୋଶଲୀରେ ଥିବା କେତେ ହଜାର ଶବ୍ଦ ଓଡ଼ିଆରେ ବ୍ୟବହାର କରିଦେଲେ ଉଭୟ ଭାଷା ମଧ୍ୟରେ ଥିବା ଦୂରତା ଲୋପ ପାଇଯିବ । ଶବ୍ଦ ଆମ ଭାଷାର ସଂପତ୍ତି ହେଲେହେଁ ଏହାହିଁ କେବଳ ଆମର ଭାଷା ନୁହେଁ । ଶବ୍ଦ ଗଠନର ଓ ବ୍ୟାକରଣର ଯେଉଁ ପଦ୍ଧତି ଆମ ଭାଷା ଆପଣାର କରିଛି ତାହାକୁ କେବେ ଓଡ଼ିଆ ଭାଷା ଆତ୍ମୀକୃତ କରି ପାରିବ ନାହିଁ । ଭୟ କେବଳ ଓଡ଼ିଆ ଭାଷାରେ ଶିକ୍ଷିତ ହେବାପରେ କୋଶଲୀଭାଷା ପ୍ରତି ଯଦି ଆମର ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ଘଟେ । କୌଣସି ଭାଷାର ମୌଳିକତା ଓ ସ୍ୱତନ୍ତ୍ରତା ଏକ ସ୍ଥିର ଗୁଣ ହୋଇ ଚିରକାଳ ରହିଥିବ, ଆଶା କରିବା ବୃଥା । ପରିବର୍ତ୍ତିତ ସମୟର ସାଂସ୍କୃତିକ ଆକ୍ରମଣରୁ ତାକୁ ଯଦି ରକ୍ଷା କରା ନଯାଏ ପୃଥିବୀର ଅନେକ ଭାଷା ପରି ଏହା ମଧ ଲୋପ ପାଇଯିବ । ଭାଷା ସୁରକ୍ଷା ଏବେ ଆଉ ଏକ ଆବେଗର କଥା ନୁହେଁ ଏହା ଏକ ଯୋଜନା । ଏ ଭାଷା ପାଇଁ ଯଦି ଏହା ଏବେଠୁଁ ଆରମ୍ଭ ନହୁଏ ଆମର ଉତ୍ତର ପୁରୁଷମାନେ ଏଠି କେବେ ଦିନେ ଆମପରି ଆଲୋଚନା କରିବେ କୋଶଲୀ ଭାଷାର କଣ କଣ ସ୍ୱାତନ୍ତ୍ୟ ଥିଲା, ଏବେ ଆମେ ପ୍ରାକୃତ ଓ ପାଲି ଭାଷା ପାଇଁ ଯେମିତି ଆଲୋଚନା କରୁଛୁଁ ।

*(ସମ୍ବଲପୁର ଲୋକଉତ୍ସବ ଆଲୋଚନାଚକ୍ର-୨୦୦୧)*

# ଓଡ଼ିଶାର ଲୋକଭାଷା ଓ ମାନକ ଓଡ଼ିଆ

॥୧॥

ଓଡ଼ିଆ ଭାଷାର ମାନକୀକରଣ କେବେ ଓ କେମିତି ଘଟିଲା ସେକଥା ଏବେ ଆଉ ଲୋକେ ବିଚାରୁ ନାହାନ୍ତି । ଓଡ଼ିଶାର ସବୁ ଅଞ୍ଚଳର ଲୋକଭାଷାକୁ (ଯାହାକୁ ଉପଭାଷା କହିବା ପାଇଁ ମୁଁ ଭଲପାଇ ଥାଆନ୍ତି, କିନ୍ତୁ ବିଷୟ ସ୍ଥିର କଲାବେଳେ ମୋତେ ସେମିତି ହିଁ ନିର୍ଦ୍ଦେଶ ଦିଆଯାଇଛି ।) ଉପେକ୍ଷା କରି ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକଭାଷାକୁ ଓଡ଼ିଆ ଭାଷାର ମାନ୍ୟତା ଦିଆଯାଇଛି । ପ୍ରାୟ ଶହେ ବର୍ଷ ତଳେ ଦଳୀୟ ଚେଷ୍ଟାରେ ଘଟିଥିବା ଏଇ ଘଟଣାଟି ଓଡ଼ିଆ ଭାଷାର କଣ ଓ କେତେ ମଙ୍ଗଳ କରିଛି ଜଣା ପଡ଼ିନି । କିନ୍ତୁ ଓଡ଼ିଶାର ଅନ୍ୟ ଅଞ୍ଚଳର ଭାଷାର ବିନାଶ ପାଇଁ ଏହା ଅଧିକ ତତ୍ପର ହୋଇପଡ଼ିଛି । ପୁଣି ଅପରାପର ଅଞ୍ଚଳର ଭାଷାପ୍ରତି ଯେଉଁ ଦୃଷ୍ଟିଭଙ୍ଗୀ ଗତ ଶହେବର୍ଷ ହେଲା ଗଢ଼ି ଉଠିଛି ତାହାହିଁ ଶହେ ବର୍ଷର ଭାଷା ସୁରକ୍ଷା ମଧ୍ୟରେ ଓଡ଼ିଆଭାଷାକୁ ଅଧିକ କ୍ଷୟଶୀଳ, ସମ୍ଭାବନାଶୂନ୍ୟ ଓ ସୀମିତ କରିଛି । ଏ ଭିତରେ ଘଟିଥିବା ବାଦ ପ୍ରତିବାଦକୁ ଆମେ ଉପେକ୍ଷା କରିଚାଲିଥିଲେ ହେଁ ବର୍ତ୍ତମାନ ପାଇଁ ଏହାକୁ ଅଧିକ ଜଟିଳ ନ କରିବା ହିଁ ବିଜ୍ଞତା ହେବ । (ଦ୍ରଷ୍ଟବ୍ୟ – ଉତ୍କଳ ସାହିତ୍ୟ, ଧ୍ରୁବ ନାଟକର ସମାଲୋଚନା, ବିଶ୍ୱନାଥ ରେ ବନାମ ଶ୍ୟାମସୁନ୍ଦର ରାଜଗୁରୁ ଏବଂ ଝଙ୍କାର, ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷା, ଗୋଲକ ବିହାରୀ ଧଳ ବନାମ ଅଶ୍ୱିନୀ କିମାର ପୁଝାରୀ ।)

ଏକଥାକୁ ବିଚାରିବା ପାଇଁ ଆମେ ଓଡ଼ିଆ ଧ୍ୱନି ଶବ୍ଦକୁ ଆଲୋଚନା କରିବା । ବିଚାର ପ୍ରସଙ୍ଗରେ ପଶ୍ଚିମ ଓଡ଼ିଶାର ଲୋକଭାଷାରେ (ଯାହାକୁ ମୁଁ କୋଶଲୀ କହିବାକୁ ଭଲପାଏ) ଧ୍ୱନି ଶବ୍ଦର ବ୍ୟବହାର ଓ ତା'ର ପ୍ରଜନନ କ୍ଷମତା ବିଚାର କରିବା ।

॥ ୨ ॥

ଧ୍ୱନିଶବ୍ଦ ମୂଳତଃ ଏକ ଧ୍ୱନି ଗଠନ । ଏହା କେବଳ କୌଣସି 'ଶବ୍ଦ'ର ଅନୁକରଣ ନହୋଇ ବେଳେବେଳେ ମାନସିକ ଓ ଦୈହିକ ଅନୁଭୂତିର ସୂଚନା ଦେଇଥାଏ । ଯେମିତ ମହମହ, ଫଣଫଣ, ରସରସ । ଧ୍ୱନିଶବ୍ଦ ସାଧାରଣତଃ ଦ୍ୱିତ୍ୱ ହୋଇଥାଏ ଓ ମୂଳ ଶବ୍ଦର କୌଣସି ନିର୍ଦ୍ଦିଷ୍ଟ ଅର୍ଥ ନଥାଏ । ବ୍ୟାକରଣିକ କୋଟୀ ଭାବରେ ବିଚାର କଲେ ଏ ଶବ୍ଦଗୁଡ଼ିକ ମୁଖ୍ୟତଃ କ୍ରିୟା ବିଶେଷଣ । ଅନ୍ୟ ଶବ୍ଦ ସବୁ ଐତିହାସିକ କ୍ରମରେ ବଦଳି ଚାଲିଥିଲେହେଁ ଧ୍ୱନି ଶବ୍ଦର ପ୍ରାୟତଃ ପରିବର୍ତ୍ତନ ଘଟେନି । ଏହାର କାରଣ ହୋଇପାରେ ଧ୍ୱନି ଶବ୍ଦର ଗଠନରେ ହିଁ ଲୁଚି ରହିଥାଏ ଏହାର ଅର୍ଥ । ଗଠନଟି କୌଣସି କାରଣରୁ ପରିବର୍ତ୍ତିତ ହେଲେ ପ୍ରଭୁତ କ୍ଷତି ଘଟନ୍ତା ଅର୍ଥର । ସାରଳା ମହାଭାରତରେ ବ୍ୟବହୃତ ଧ୍ୱନି ସବୁ ଏଣୁ ଆଜି ବି ଠିକ୍ ସେଇ ଅର୍ଥ ଓ ରୂପରେ ପ୍ରଚଳିତ ।

ଆଜି ଓଡ଼ିଆରେ ମିଳୁଥିବା ଧ୍ୱନିଶବ୍ଦର ସଂଖ୍ୟା ପ୍ରାୟ ତିନିଶହ । ଦୁଃଖର କଥା ଏ ଶବ୍ଦସବୁ ଓଡ଼ିଆ ଅଭିଧାନ ଓ ବ୍ୟାକରଣରେ ସଂପୂର୍ଣ୍ଣ ଉପେକ୍ଷିତ । ଏ ଉପେକ୍ଷାର ହେତୁ ବୋଧହୁଏ ଏ ଶବ୍ଦମାନଙ୍କ ପ୍ରତି ସଭ୍ୟ ସମାଜରେ ଏକ ନୂତନ ରୁଚିବୋଧରେ ପୀଡ଼ିତ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । ଏ ଦୃଷ୍ଟିଭଙ୍ଗୀରେ ଆକ୍ରାନ୍ତ ହୋଇଛନ୍ତି ନିଜେ ଭାଷାବିଦ୍ ବିଜୟ ପ୍ରସାଦ ମହାପାତ୍ର, ଯେତେବେଳେ ସେ ଲେଖନ୍ତି : "ଏ ଶବ୍ଦ ଗୁଡ଼ିକର ବ୍ୟବହାରରେ ସଂଯମ ନ ରହିଲେ କଥାର ଗାମ୍ଭୀର୍ଯ୍ୟ ନଷ୍ଟ ହେବାର ସମ୍ଭାବନା ଥାଏ ।" (ଓଡ଼ିଆରେ ଧ୍ୱନିଶବ୍ଦ, ଝଙ୍କାର, ଏପ୍ରିଲ ୧୯୯୬) ।

ଯଦିଓ କ୍ରିୟା ବିଶେଷଣ ଭାବେ ବ୍ୟବହୃତ ହେଉଥିବା ଏଇ ଶବ୍ଦସବୁ - 'ଇଆ' ପର ପ୍ରତ୍ୟୟ ଯୋଗ ହୋଇ ବିଶେଷଣ ସୃଷ୍ଟି କରି ପାରନ୍ତି ଯେମିତି ସୁଲୁସୁଲୁ + ଇଆ = ସୁଲୁସୁଲିଆ, ତର ତର + ଇଆ = ତରବରିଆ ଇତ୍ୟାଦି । ପୁଣି କେତେକ କ୍ଷେତ୍ରରେ ମୂଳ ଧ୍ୱନି ଶବ୍ଦରେ - 'କା' ପର ପ୍ରତ୍ୟୟ ଯୋଗ ହୋଇ ନୂତନ କୋଟୀର ଶବ୍ଦ ତିଆରି ହୁଏ ଯେମିତି - ଖଟ୍‌ମଟ୍ = ଖଟକା, ତର୍‌ତର = ତରକା, ଲହଲହ = ଲହକା ଇତ୍ୟାଦି । ତଥାପି ଧ୍ୱନିଶବ୍ଦପ୍ରତି ସମକାଳରେ ସାହିତ୍ୟିକ ସ୍ୱୀକୃତି

ବା ଶ୍ରଦ୍ଧା ଖୁବ୍‌କମ୍ । ଏହାର ପୃଷ୍ଠଦେଶରେ ବୋଧହୁଏ ରହିଛି ଓଡ଼ିଆ ଭାଷାର ମାନକୀ କରଣର ପ୍ରାଥମିକ କାଳରେ ଏ ଭାଷାର ଆଞ୍ଚଳିକ ଓ ଦେଶଜ ଶବ୍ଦ ପ୍ରତି ହତାଦର । ପ୍ରାଥମିକ କାଳରେ ଓଡ଼ିଆ ଭାଷାର ମାନକୀ କରଣ ଘଟିଲା କେତେଜଣ ଅଣ ଓଡ଼ିଆଙ୍କ ହାତରେ । ସେମାନଙ୍କ ପାରିବାରିକ ଜୀବନରେ ଓଡ଼ିଆ ଭାଷାର ବ୍ୟବହାର ଥିଲା ଗୌଣ । ଆପଣାର ସୁବିଧା ପାଇଁ ସେମାନେହିଁ ପ୍ରବର୍ତ୍ତନ କଲେ ଏକ ସଂସ୍କୃତନିଷ୍ଠ ଓଡ଼ିଆ ଭାଷା । ସମସ୍ତ ଶ୍ରଦ୍ଧା ଓ ସମ୍ମାନ ସତ୍ତ୍ୱେ ରାଧାନାଥ ରାୟ, ମଧୁସୂଦନ ରାଓ, ରାମଶଙ୍କର ରାୟ, ଉମେଶ ଚନ୍ଦ୍ର ସରକାର, ଜଗନ୍‌ମୋହନ ଲାଲା, ଗୌରୀଶଙ୍କର ରାୟ ଓ ବିଶ୍ୱନାଥ କର ପ୍ରମୁଖଙ୍କୁ ଏବଂ ସେମାନଙ୍କ ସମର୍ଥନରେ ପ୍ରସ୍ତୁତ ପରମ୍ପରାକୁ ଆମେ ଏଥିପାଇ ଦାୟୀ କରିପାରିବା । ସେଦିନଠୁ ଉପେକ୍ଷିତ ଏଇ ଶବ୍ଦ ସବୁ ଆସ୍ତେ ଆସ୍ତେ ସାହିତ୍ୟ ଜଗତରୁ ଦୂରତର ହୋଇ ଯିବାରେ ଲାଗିଛି । ଆଜି ନୂଆ ଶବ୍ଦ ସୃଜନ କଲାବେଳେ ଆମକୁ ଆଉ ଓଡ଼ିଆ ଶବ୍ଦ ଗଠନର ପରମ୍ପରା ମନେ ପଡୁନି । ସଂସ୍କୃତ ଶବ୍ଦ ଗଠନ ପରମ୍ପରାର ଦ୍ୱାରସ୍ଥ ହେବା ପାଇଁ ଆମେ ବାଧ ହେଉଛୁ । ମାନକୀକରଣର ଏଇ ନୂଆ ଯୁଗରେ ମୂଳ ଓଡ଼ିଆର ଓ ତାର ଲୋକଭାଷାମାନଙ୍କଠୁଁ ଦୂରସ୍ଥ ହୋଇ ଚାଲିଛୁଁ ।

॥ତୀ॥

କୋଶଲୀ ଭାଷାରେ (ତଥାକଥିତ ପଶ୍ଚିମ ଓଡ଼ିଶାର ଲୋକଭାଷାରେ) ଧ୍ୱନିଶବ୍ଦର ପରିମାଣ ପ୍ରଚୁର । (ଆଜିଯାଏ ମୋ ଦ୍ୱାରା ପ୍ରାୟ ହଜାରେଟି ଧ୍ୱନିଶବ୍ଦ ସଂଗୃହିତ ହୋଇସାରିଛି ।) ଭାଷାବିଦ୍ ବିଜୟ ପ୍ରସାଦ ମହାପାତ୍ରଙ୍କ ସଂଗୃହିତ ଅଧିକାଂଶ ଶବ୍ଦ ଅବିକଳ ରୂପେ କିମ୍ବା ଅଳ୍ପ ପରିବର୍ତ୍ତିତ ହୋଇ ଆଜି ବି ପଶ୍ଚିମ ଓଡ଼ିଶାର ଲୋକମୁଖରେ ପ୍ରଚଳିତ । କେତେକ କ୍ଷେତ୍ରରେ ଏ ଶବ୍ଦମାନଙ୍କର ଅର୍ଥପରିଧିରେ ମୌଳିକ ପାର୍ଥକ୍ୟ ରହିଛି । କିନ୍ତୁ ଏ ସଂପର୍କରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥାହେଲା କୋଶଲୀ ଭାଷାରେ ଧ୍ୱନି ଶବ୍ଦମାନଙ୍କର ପ୍ରଜନନ କ୍ଷମତା । ବିଭିନ୍ନ ପର ପ୍ରତ୍ୟୟ ଯୋଗ ହୋଇ ଏ ଭାଷାରେ ଧ୍ୱନି ଶବ୍ଦ ସବୁ ଅନ୍ୟ ବ୍ୟାକରଣିକ କୋଟୀ ସୃଷ୍ଟିପାଇଁ ଅଧିକ କ୍ରିୟାଶୀଳ । ପୁଣି ମାନକ ଓଡ଼ିଆର ତଥା କଥିତ ଭ୍ରାନ୍ତ ସଂଭ୍ରାନ୍ତ ବୋଧ ଏ

ଭାଷାରେ ନାହିଁ । ଏଣୁ ଧ୍ୱନିଶବ୍ଦ ସବୁ ଦ୍ୱିଧାହୀନ ଓ ନିର୍ବିକାର ଭାବରେ ଏ ଭାଷାର ସମସ୍ତ ଭାଷାଭାଷୀ ବ୍ୟବହାର କରନ୍ତି । ଅଧିକାଂଶ ଭାଷାଭାଷୀ ଧ୍ୱନି ଶବ୍ଦର ବ୍ୟବହାର ଭାଷାକୁ ଅଧିକ ସଂପ୍ରେଷଣକ୍ଷମ ଏବଂ ସାଙ୍ଗୀତିକ କରେ ବୋଲି ମନେ କରନ୍ତି ।

ଦ୍ୱିତୀୟ କଥା ହେଲା ଧ୍ୱନିଶବ୍ଦରୁ ନୂତନ ଶବ୍ଦ ତିଆରି ବେଳେ ଓଡ଼ିଆ ଓ ପଶ୍ଚିମାଞ୍ଚଳୀୟ ଲୋକଭାଷାରେ କେତେକ ମୌଳିକ ପାର୍ଥକ୍ୟ ରହିଛି । ଓଡ଼ିଆର 'ଆ' ଓ 'କା' ପ୍ରତ୍ୟୟର ବ୍ୟବହାର କ୍ଷେତ୍ର ସୀମିତ ଥିବାବେଳେ ପଶ୍ଚିମ ଓଡ଼ିଶାର ଲୋକଭାଷାରେ ଏହାର ବ୍ୟବହାର ପ୍ରାୟ ସମସ୍ତ ଧ୍ୱନିଶବ୍ଦରେ ସମ୍ଭବ । ଯେମିତି –

| | ଧ୍ୱନିଶବ୍ଦ | ପରପ୍ରତ୍ୟୟ | ନୂତନ ଶବ୍ଦ |
|---|---|---|---|
| (୧) | ମସ୍‌ମସ୍ | ଇଆ | ମସ୍‌ମସିଆ (ଭଜା) |
| | ମୁସ୍‌ମୁସ୍ | ଇଆ | ମୁସ୍‌ମୁସିଆ (ଖରା) |
| | ମହମହ | (କ)ଇଆ | ମହମହକିଆ (କହଁର) |
| | ଲହଲହ | (କ)ଇଆ | ଲହଲହକିଆ (ବଉଁଶ) |
| | ଢ଼ଉଢ଼ଉ | (କ)ଇଆ | ଢ଼ଉଢ଼ଉକିଆ (ରଂଗ) |
| (୨) | ମସ୍‌ମସ୍ | କା / କି | ମସ୍‌କା (ଗୁଣ୍ଡା) ମସ୍‌କି (-ଯିବା) |
| | ଫସ୍‌ଫସ୍ | କା / କି | ଫସ୍‌କା (ଭାଙ୍ଗ) ଫସ୍‌କି (-ଯିବା) |
| | ଲହଲହ | କା / କି | ଲହଁକା (ବେମାର) ଲହଁକି (-ଯିବା) |

ଲକ୍ଷ୍ୟ କରିବା କଥା (୧)ରେ ଥିବା ଧ୍ୱନିଶବ୍ଦ ସବୁରେ ସ୍ୱର ବର୍ଣ୍ଣ ବା ହ ଧ୍ୱନି ଶେଷରେ ଥିଲେ ଇଆ ପ୍ରରପ୍ରତ୍ୟୟ ଯୋଗ ପୂର୍ବରୁ କ ର ଆଗମ ଘଟେ ଏବଂ ଶେଷରେ ଚନ୍ଦ୍ରବିନ୍ଦୁ ଯୁକ୍ତ ସ୍ୱର ଥିଲେ ପ୍ରତ୍ୟୟ ଯୋଗହୋଇ ନୂତନ ଶବ୍ଦ ସୃଷ୍ଟିର ସମ୍ଭାବନା ଖୁବ୍‌କମ ରହେ । (୨) ଚିହ୍ନିତ ଧ୍ୱନିଶବ୍ଦ ସବୁରେ ଓଡ଼ିଆରେ କେବଳ କା ପ୍ରତ୍ୟୟ ଯୋଗହୋଇ ବିଶେଷଣ ପଦ ଗଠିତ ହେବାବେଳେ କୋଶଲୀରେ କା ଓ କି ଉଭୟ ଯୋଗହୋଇ ଯଥାକ୍ରମେ ବିଶେଷଣ ଓ କ୍ରିୟା ବିଶେଷଣ ଗଠିତ ହୁଏ ।

ଏତଦ୍‌ଭିନ୍ନ (ବ୍ୟଞ୍ଜନ, ସ୍ୱରବ୍ୟଞ୍ଜନ) ଦ୍ୱିତ ଗଠନର ସମସ୍ତ ଧ୍ୱନିଶବ୍ଦ ପଶ୍ଚିମ ଓଡ଼ିଶାର ଭାଷାରେ ମୂଳଧାତୁ ରୂପେ ବ୍ୟବହୃତ ହୋଇ କ୍ରିୟାପଦ ସୃଷ୍ଟି କରନ୍ତି । ମୂଳ ଓଡ଼ିଆ କ୍ରିୟାପଦ ଖୁବ୍ ସୀମିତ । ପୁଣି ଆଧୁନିକ ଓଡ଼ିଆ ଭାଷାରେ ତାର ବ୍ୟବହାର ଆହୁରି ସୀମିତ । ତତ୍‌ଭବ କ୍ରିୟାପଦହିଁ ଓଡ଼ିଆ ଭାଷାର ପ୍ରଧାନ କ୍ରିୟା ଉପାଦାନ । ସେଇ ପ୍ରସଙ୍ଗରେ କୋଶଲୀରେ ବ୍ୟବହୃତ ଏଇ ଧ୍ୱନି ଶବ୍ଦସୃଷ୍ଟ ମୂଳଧାତୁ ଓ ଦ୍ୱିତୀୟ କ୍ରିୟାଯୁକ୍ତ କ୍ରିୟାସବୁ ଆମପାଇଁ ଅନନ୍ୟ ସଂପଦ । ଯେମିତି –

(୩) ଝିମ୍‌ଝିମ୍ – ଠିଆ ହେଇକରି ମୋର ହାତ୍‌ଗୋଡ଼୍ ଝିମ୍‌ଝିମଉଛେ ।

(୪) ଟପ୍‌ଟପ୍ – ବରସା ଦିନେ ବଁଧର ପାଏନ୍ ଟପ୍‌ଟପଉଛେ ।

(୫) ଆମର୍ ଗାଁ ଖୁଇଲ୍ କାଦୋ ପଚ୍‌ପଚ୍ ହେଇଛେ / ପଚ୍‌ପଚେଇ ଯାଇଛେ ।

(୬) ବୁଢ଼ାମାନେ ରାଗେ ତମ୍‌ତମ୍ ହଉଛନ୍ / ତମ୍‌ତମେଇ ଯଉଛନ୍ ।

ଏଠି (୫) ଓ (୬) କ୍ଷେତ୍ରରେ ଧ୍ୱନିଶବ୍ଦ ଦ୍ୱିତୀୟ କ୍ରିୟା ଗ୍ରହଣ କରି ବାକ୍ୟ ସୃଷ୍ଟି କରିଛି । ବେଳେବେଳେ ବିଶେଷକରି 'ଯା' କୁ ଦ୍ୱିତୀୟ କ୍ରିୟାରୂପେ ଗ୍ରହଣକଲେ ଧ୍ୱନିଶବ୍ଦ ପରେ ମୌଳ ବର୍ଣ୍ଣ 'ଏଇ' ଯୋଗହୋଇଛି (ମହାପାତ୍ର: ୧୯୯୪) । କ୍ରିୟାପଦ ସୃଷ୍ଟିର ଏଇ ବ୍ୟବସ୍ଥା କୋଶଲୀ ଭାଷାର ନିଜସ୍ୱ ପ୍ରକ୍ରିୟା ଏବଂ ଏକ ସ୍ୱୟଂକ୍ରିୟ ବ୍ୟାକରଣିକ ବ୍ୟବସ୍ଥା । (ସ୍ଥାନ ଓ ସମୟ ଅଭାବରୁ ଏ ସମ୍ପର୍କରେ ବିସ୍ତୃତ ଆଲୋଚନା ପାଇଁ ଏଠି ସୁଯୋଗ ନାହିଁ) ।

ଆଉ କେତେକ ଧ୍ୱନିଶବ୍ଦ କୋଶଲୀ ଭାଷାରେ ବହୁ ପରିମାଣରେ ପରିଲକ୍ଷିତ । ଏସବୁର ଗଠନ ହେଲା (ବ୍ୟଞ୍ଜନ, ସ୍ୱର, ବ୍ୟଞ୍ଜନ, ବ୍ୟଞ୍ଜନ, ସ୍ୱର ବ୍ୟଞ୍ଜନ) । ଏ ସମ୍ପର୍କରେ ମହାପାତ୍ର ୧୯୯୬ ଏହାର ଖୁବ୍ ସଂକ୍ଷିପ୍ତ ତାଲିକାଟିଏ ଦେଇଛନ୍ତି । ପୂର୍ବୋକ୍ତ ଧ୍ୱନିଶବ୍ଦ ଗୁଡ଼ିକ ପରି ଏହାମଧ୍ୟ ମୂଳଧାତୁ ଓ / ବା ଦ୍ୱିତୀୟ କ୍ରିୟା ସହ ବାକ୍ୟରେ ବ୍ୟବହୃତ ହୋଇପାରେ । ଯେମିତି

(୭) ଲିଟୁ ବଲ୍‌ନେ ସାରା ସହର୍ ଝଲ୍‌ମଲେଇ ଯଉଛେ । (ଝଲ୍‌ମଲ୍) ।

(୮) ଜରେ ମୋର୍ ହାତ୍‌ଗୋଡ଼୍ କସ୍‌କସଉଛେ । (କସ୍‌ମସ୍) ।

ଏ ସମସ୍ତ ଆଲୋଚନା ଭିତରେ ଆମପାଇଁ ଦୁଇଟି କଥା ସ୍ପଷ୍ଟ । ପ୍ରଥମତଃ ଓଡ଼ିଆ ଧ୍ୱନିଶବ୍ଦ ଆସ୍ତେ ଆସ୍ତେ ସରିସରି ଆସୁଥିବା ଶବ୍ଦକୋଟୀ, ଯାହାର ବ୍ୟବହାର ଓ ପ୍ରଜନନ କ୍ଷମତା ଲୋପ ହେବାକୁ ଯାଉଛି । ଅପର ପକ୍ଷରେ ପଶ୍ଚିମ ଓଡ଼ିଶାର ଲୋକଭାଷାରେ ଏହାର ପ୍ରୟୋଗ ଓ ପ୍ରଜନନ କ୍ଷମତା ଆସ୍ତେ ଆସ୍ତେ ସର୍ବାଧିକ ସ୍ୱୀକୃତି ପାଉଛି । ଦ୍ୱିତୀୟତଃ ମାନକୀକରଣ ପ୍ରକ୍ରିୟାରେ ଧ୍ୱନିଶବ୍ଦସବୁ ଓଡ଼ିଆରେ ଉପେକ୍ଷିତ ହେବାବେଳେ କୋଶଲୀ ଭାଷାରେ ଏହାର ବ୍ୟବହାର ପାଇଁ ସମସ୍ତ ସୃଜନଶୀଳ ଲେଖକ ଓ ଭାଷାଭାଷୀ ଆଗ୍ରହୀ । ଉଭୟ ଭାଷାକୁ ଏଇ ଘଟଣାଟି ଆହୁରି ଦୂରତର ଅଟିରେ କରିଦେବ ।

*(ଓଡ଼ିଆ ଅଧ୍ୟାପକ ସମ୍ମେଳନ ସୋନପୁର-୨୦୦୧ରେ ପଠିତ ଓ ଆଲୋଚିତ)*

# କୋଶଲୀ ଭାଷାର ସ୍ୱରଧ୍ୱନିକ୍ରମ

ପ୍ରତ୍ୟେକ ଭାଷା ନିଜର ଅନ୍ତର୍ନିହିତ ନିୟମରେ ବନ୍ଧା । ଯେତେ ଅବ୍ୟବସ୍ଥିତ ମନେହେଲେ ବି ଭାଷା ତା'ର ଅନ୍ତଃସ୍ଥ ସୂତ୍ରକୁ ସ୍ୱୀକାରି ନେଉଥାଏ । ପରବର୍ତ୍ତୀ ପୀଢ଼ି ଏହି ସୁତ୍ରକୁ ନିଜର ଅଜାଣତରେ ଶିଖିନିଏ ଓ ଭାଷା ବଞ୍ଚେ । ପ୍ରତ୍ୟେକ ଭାଷାର ସୂତ୍ର ନିଜସ୍ୱ ଓ ନିଆରା । ନିଜସ୍ୱ ଓ ନିଆରା କାହିଁକିନା, ଯଦିଓ ଏହା ଆହୃତ ବା ଅନୁକୃତ, ତାହା ନିଜର ଆଞ୍ଚଳିକ ବୈଶିଷ୍ଟ୍ୟ, ନିଜ ସମୟର ପ୍ରଭାବ ଏମିତି ଅନେକ ପରିବର୍ତ୍ତନରେ ପରିବର୍ତ୍ତିତ ହୋଇ ନିଜର ହେଉଥାଏ । ଯେଉଁ ଭାଷାର ଏହି ସୂତ୍ର ଅନ୍ୟ ଭାଷାସହ ଯେତିକି ଦୂରବର୍ତ୍ତୀ କିମ୍ବା ନିକଟବର୍ତ୍ତୀ, ସେ ଭାଷା ସେହି ଅନ୍ୟ ଭାଷାଠାରୁ ସେତିକି ଦୂରବର୍ତ୍ତୀ କିମ୍ବା ନିକଟବର୍ତ୍ତୀ ।

ପ୍ରବନ୍ଧର ଆରମ୍ଭରୁ ଅନ୍ୟଏକ କଥା ସ୍ପଷ୍ଟ କରିଦେବା ଉଚିତ । ଭାଷା ଓ ଉପଭାଷା ସଂପୂର୍ଣ୍ଣ ଭାବାବେଗ ସର୍ବସ୍ୱ । ନିର୍ଦ୍ଦିଷ୍ଟ ଗୋଟିଏ ଅଞ୍ଚଳର କଥନଶୈଳୀକୁ ଅସ୍ୱୀକାର କରି ଉପଭାଷା କହିବା ସଂପୂର୍ଣ୍ଣ ରାଜନୈତିକ ବ୍ୟାପାର । ପ୍ରତ୍ୟେକ ବ୍ୟକ୍ତି ତା'ର ନିଜସ୍ୱ ଭାଷା କହେ । ଯେଉଁ ବୃହତ୍ତର ଗୋଷ୍ଠୀ ତାର କଥନ ଶୈଳୀକୁ ବୁଝିପାରେ, ସେ ସେହି ଗୋଷ୍ଠୀର । ସମୟକ୍ରମେ ପରସ୍ପର ବୁଝାମଣାରେ ଅସୁବିଧା ହୁଏ । ବୃହତ୍ତର ଭାଷାଗୋଷ୍ଠୀ ଭାଙ୍ଗିଯାଏ ଅନେକ କ୍ଷୁଦ୍ର ଗୋଷ୍ଠୀରେ । ଅଥଚ ବ୍ୟକ୍ତି ନିଜର ଭାଷା ନିଜେ ତିଆରିକରି ଚଳିଥାଏ । ତାର ପରବର୍ତ୍ତୀ ପୀଢ଼ିକୁ ଶିଖାଉଥାଏ ଓ ସେମାନେ ନିଜର ଅଜାଣତରେ ତାହା ଆୟତ୍ତ କରୁଥାନ୍ତି । କେଉଁଟି ଭାଷା, କେଉଁଟି ଉପଭାଷା ଚିହ୍ନଟ କରିବାର କିଛି ନିର୍ଦ୍ଦିଷ୍ଟ ନିୟମ ନାହିଁ । ପ୍ରାୟ ସେଇ ଗୋଷ୍ଠୀର

ସର୍ବଜନବୋଧ କଥନ ଶୈଳୀ ତାର ମାନକ ଭାଷା (Standard Language) ଓ ଅନ୍ୟ ସମସ୍ତ ଉପଭାଷା ।

ଏକ ଦୁଇଟି କଥାକୁ ଉପକ୍ରମ ଭାବେ ଗ୍ରହଣ କରି ମୂଳ ପ୍ରବନ୍ଧକୁ ଆଲୋଚନା କରାଯାଇପାରେ । ତା' ପୂର୍ବରୁ ଅବଶ୍ୟ କୋଶଲୀ ଭାଷା ଶବ୍ଦଟିକୁ ସ୍ପଷ୍ଟ କରିଦେବା ଉଚିତ୍ । କୋଶଲୀ ଭାଷା ମାନକ ଓଡ଼ିଆର ବ୍ୟତିକ୍ରାନ୍ତ କଥନ ଶୈଳୀ । ଭୌଗୋଳିକ ଭାବରେ ଏହା ପ୍ରାୟ ପାଞ୍ଚୋଟି ଜିଲ୍ଲାର (ସମ୍ବଲପୁର, ବଲାଙ୍ଗୀର, ସୁନ୍ଦରଗଡ଼, ଫୁଲବାଣୀ, କଳାହାଣ୍ଡି) ବହୁଳ କଥିତ ଭାଷା । ଅଥଚ ପ୍ରବନ୍ଧରେ ବ୍ୟବହୃତ କୋଶଲୀ ଭାଷା ପ୍ରାବନ୍ଧିକଙ୍କ ସୀମିତ ଆହରଣରୁ କିଛି ପର୍ବ ପିଢ଼ିରୁ ଓ କିଛି ବିଭିନ୍ନ ଅଞ୍ଚଳରୁ କେନ୍ଦ୍ରକରି ଉଦାହୃତ ।

ପ୍ରତ୍ୟେକ ଭାଷାର ସ୍ୱରଧ୍ୱନିର ଭୂମିକା ଗୁରୁତ୍ୱପୂର୍ଣ୍ଣ । କାହିଁକିନା ତା'କୁ କେନ୍ଦ୍ରକରି ଅକ୍ଷର (Syllable) ସୃଷ୍ଟିହୁଏ । ସ୍ୱରବର୍ଣ୍ଣ ବିନା କେବଳ ବ୍ୟଞ୍ଜନଧ୍ୱନି ଉଚ୍ଚାରିତ ହୋଇ ପାରେନା କିମ୍ବା ଅକ୍ଷର ସୃଷ୍ଟି କରିପାରେନା । ଏଇ ଭିତ୍ତିରେ ସ୍ୱରଧ୍ୱନିଗୁଡ଼ିକ ସ୍ୱୟଂ ଗୋଟିଏ ଗୋଟିଏ ଅକ୍ଷର ଓ ଏହାର ପୂର୍ବରେ କିମ୍ବା ପରେ ବ୍ୟଞ୍ଜନଧ୍ୱନି ରହିବାର ସମ୍ଭାବନା ରହିଛି । ଏଇ ସମସ୍ତ ସମ୍ଭାବନାର ସଦୁପଯୋଗ ସବୁଭାଷାରେ ହୋଇନାହିଁ । ଯେମିତି / ଏକ୍ / ଗୋଟିଏ ଓଡ଼ିଆ ଶବ୍ଦ ଅଥଚ / ଓକ୍ / ଓଡ଼ିଆ ଶବ୍ଦ ନୁହେଁ, ଇଂରାଜୀ ଶବ୍ଦ । / ଏକ / ଅନୁକ୍ରମକୁ ଓଡ଼ିଆ ଭାଷାଭାଷୀ ଲୋକେ ଅର୍ଥ ଦେଇଛନ୍ତି, ଅଥଚ / ଓକ୍ / ଅନୁକ୍ରମକୁ ଅସ୍ୱୀକାର କରିଛନ୍ତି । ସେମିତି ଆଉ ଗୋଟିଏ ଅନୁକ୍ରମ / ଇଲ୍ / ଯାହା ଇଂରାଜୀରେ ବ୍ୟବହୃତ, ଓଡ଼ିଆରେ ନୁହେଁ । / ଓକ୍, ଇଲ୍ / ଏଇ ଦୁଇ ଅନୁକ୍ରମରେ ମିଶ୍ରିତ ରୂପ 'ଓକିଲ' ଓଡ଼ିଆରେ ଅବିକଳ ପ୍ରଚଳିତ (ଆଦୃତ ହେଲେ ବି) ।

ଠିକ୍ ସେମିତି କୁହାଯାଇପାରେ ଦୁଇଟି ସ୍ୱରଧ୍ୱନି ସହାବସ୍ଥାନରେ ସମସ୍ତ ସମ୍ଭାବନା ଗୋଟିଏ ଭାଷାରେ ବ୍ୟବହୃତ ନୁହେଁ। ଧ୍ୱନି ସହାବସ୍ଥାନର ସମସ୍ତ ସମ୍ଭାବନାକୁ ଗୋଟିଏ ଭାଷା ବ୍ୟବହାର କରେନି । ଯେମିତି "ଆ" ଓ "ଇ"ର ପ୍ରଥମ ଅବସ୍ଥାନ / ଆଇ / ଓଡ଼ିଆରେ ଅର୍ଥପୂର୍ଣ୍ଣ । କିନ୍ତୁ ତାହାର ବିପରୀତ ଅବସ୍ଥାନ / ଇଆ / ର

କୌଣସି ଅର୍ଥ ନାହିଁ । ଏହା କେବଳ ଏକ ବୃହତ୍ତର ରଚନାର ଅଂଶ ହୋଇପାରେ । ଯେମିତି "କୌତୁକିଆ" ଦିଆଯାଉ, ଇ' ଆଡ଼କୁ । /ଇଆ/ ଓଡ଼ିଆରେ ବ୍ୟବହୃତ ନହେଲେ ଅନ୍ୟ କୌଣସି ଭାଷାରେ ବ୍ୟବହୃତ ହୋଇ ପାରିବ ନାହିଁ, ଏମିତି ନୁହେଁ । ଓଡ଼ିଆ ଓ ସେହିଭାଷାର ମୌଳିକ ଧ୍ୱନି ପାର୍ଥକ୍ୟ ମଧ୍ୟରୁ ଏଇ ବ୍ୟବହାର ହେବା ନ ହେବା ଗୋଟିଏ ।

ଉଚ୍ଚାରଣ ଦୃଷ୍ଟିରୁ ଦେଖିଲେ ଓଡ଼ିଆରେ ଓ କୋଶଲୀ ଭାଷାରେ ସ୍ୱରଧ୍ୱନି ଛଅଟି : ଅ, ଆ, ଇ, ଉ, ଏ, ଓ । ନିଜସହ ନିଜର ଅବସ୍ଥାନକୁ ଛାଡ଼ିଦେଲେ ଏମାନଙ୍କ ସହାବସ୍ଥାନର ତିରିଶଟି ସମ୍ଭାବନା ରହିଛି । ଏଥିମଧ୍ୟରୁ ଓଡ଼ିଆରେ କେତୋଟି ଅନୁକ୍ରମ ଅର୍ଥପୂର୍ଣ୍ଣ ଓ ପ୍ରଚଳିତ । କେତୋଟି ନିଜେ ଅର୍ଥପୂର୍ଣ୍ଣ ନ ହେଲେବି ବୃହତ୍ତର ରଚନାର ଅଂଶ ହୋଇପାରେ । ଓଡ଼ିଆରେ ପ୍ରଚଳିତ କେତୋଟି ଅନୁକ୍ରମ କୋଶଲୀରେ ନାହିଁ । ତା'ର ବିପରୀତଟି ମଧ୍ୟ ସତ୍ୟ, କୋଶଲୀରେ ବ୍ୟବହୃତ କେତୋଟି ଅନୁକ୍ରମ ଓଡ଼ିଆରେ ନାହିଁ । କୋଶଲୀ ଓ ମାନକ ଓଡ଼ିଆ ମଧ୍ୟରେ ଏଗୁଡ଼ିକ ଗୋଟିଏ ଗୋଟିଏ ମୌଳିକ ଧ୍ୱନି ପାର୍ଥକ୍ୟ । କୋଶଲୀରେ ଥିବା ଅନୁକ୍ରମ ଗୁଡ଼ିକୁ ନିମ୍ନଦତ୍ତ ରେଖାଚିତ୍ର ମାଧ୍ୟମରେ ପ୍ରଦର୍ଶିତ କରାଯାଇପାରେ-

| + | ଅ | ଆ | ଇ | ଉ | ଏ | ଓ |
|---|---|---|---|---|---|---|
| ଅ+ | କ | ଖ | ୧ | ୨ | ୩ | ଗ |
| ଆ | ଘ | ଙ | ୪ | ଚ | ୫ | ଛ |
| ଇ | ୬ | ୭ | ଜ | ୮ | ୯ | ଝ |
| ଉ | ଞ | ୧୦ | ୧୧ | ଟ | ୧୨ | ୧୩ |
| ଏ | ଠ | ଡ଼ | ୧୪ | ଢ଼ | ଣ | ତ |
| ଓ | ଥ | ଦ | ଧ | ନ | ପ | ଫ |

୧ : ଅଇ, ମଇସ୍, ମଇ

୨* : ଅଉଛନ୍, ଚଉଲ୍, ଭଉ

୩ : ଅଏଁଠା, ବଏଠା, ହଏ

୪ : ଆଇ, ମାଇ,

୫ :　　ଆଏଜ୍, ଭାଏଲ୍, ଗାଏ
୬ :　　ପିଅ, ଦିଅ (କେବଳ କ୍ରିୟା)
୭ :　　ଇଆଡ୍ରୁ, ସିଆଡ୍ରୁ, ଲିଆ
୮ :　　ପିଉଚ, (କେବଳ କ୍ରିୟା)
୯ :　　କିଏ, ନିଏ, ଖିଏ
୧୦ :　　ଉଆଁସ୍, ଭୁଆସେନ୍, ବୁଆ
୧୧　　ଉଇ, ଧୁଇଲ, ଦୁଇ
୧୨ :　　ଗୁଏ, ଜୁଏ
୧୩ :　　ପୁଓ
୧୪ :　　ଦେଇଚ (କେବଳ କ୍ରିୟା)

*/ ଅଉ / ଅନୁକ୍ରମଟିର ଆଞ୍ଚଳିକ ବୈଚିତ୍ର୍ୟ ରହିଛି । କିଛି ଅଞ୍ଚଳରେ ଏହା / ଆଉ / ଭାବରେ ଉଚ୍ଚାରିତ ହୁଏ ।

କୋଶଲୀ ଭାଷାରେ ଏହି ଅନୁକ୍ରମମାନଙ୍କ ମଧ୍ୟରୁ କେତେକ ପୂର୍ବାଞ୍ଚଳୀୟ ଓଡ଼ିଆରେ ନାହିଁ । ଯାହା ସେ ଅଞ୍ଚଳର ଭାଷାଭାଷୀଙ୍କୁ ନୂଆଁ ଓ ଶ୍ରୁତିକଟୁ ଜଣାପଡ଼େ । ଏହା ସ୍ୱାଭାବିକ ଯେ, ପୂର୍ବାଞ୍ଚଳୀୟ ଓଡ଼ିଆରେ ବା ମାନକ ଓଡ଼ିଆରେ ଥିବା ନୂଆଁ ଅନୁକ୍ରମଗୁଡ଼ିକ କୋଶଲୀ ଭାଷାଭାଷୀ ଯେତେବେଳେ ଉଚ୍ଚାରଣ କରିବାକୁ ବାଧହୁଏ, ତା'ର ନିଖୁଣ ଉଚ୍ଚାରଣ ସମ୍ଭବ ହୁଏନି । ଅଧିକାଂଶ କ୍ଷେତ୍ରରେ ସେଗୁଡ଼ିକ ଅପଉଚ୍ଚାରିତ ହୁଏ । ଏଇ ଉଚ୍ଚାରଣର ପ୍ରବୃତ୍ତି ତା ନିଜଭାଷାରେ ଥିବା ଅନୁକ୍ରମ ଆଡ଼କୁ ମୁହାଁଇଯାଏ । ଯେମିତି ଜଣେ ପୂର୍ବାଞ୍ଚଳୀୟ ଓଡ଼ିଆ କହୁଥିବା ବ୍ୟକ୍ତି / ପୁଓ / (୧୦) କହିପାରେନି ଓ ତା'ର ଠିକ୍ ବିପରୀତ ଜଣେ କୋଶଲୀ ଭାଷା କହୁଥିବା ବ୍ୟକ୍ତି / ପୁଅ (ଓ) କହି ପାରେନି । ଏଇ ଅପଉଚ୍ଚାରଣ ତା'ର ନିଜସ୍ୱ ଆଞ୍ଚଳିକ କଥନ ଶୈଳୀର ଦାନ ।

ଦ୍ୱିସ୍ୱରକ୍ରମର ସମସ୍ତ ସମ୍ଭାବନା କୋଶଲୀ ଭାଷାରେ କିମ୍ବା ପୂର୍ବାଞ୍ଚଳୀୟ ଓଡ଼ିଆରେ ନାହିଁ । ଉଭୟ ଭାଷା ମଧ୍ୟରେ କିଛି ସମାନତା ଅଛି ଓ ଉଭୟର ଅଛି କିଛି ନିଜସ୍ୱକ୍ରମ । ଉଭୟ ଭାଷା ମଧ୍ୟରେ ଥିବା ମୌଳିକ ପାର୍ଥକ୍ୟ ମଧ୍ୟରୁ ଏକ କ୍ରମସବୁ ଗୋଟିଏ ଗୋଟିଏ ।

(କ)  ସମାନ ଅଛି :

| | କୋଶଲୀ ଭାଷା | ଓଡ଼ିଆ+ |
|---|---|---|
| ଅଇ / ୧ | ପଇସା, ମଇ | ପଇସା, ମଇ |
| ଅଉ / ୨ | ଜଉ. ଛଉ | ଜଉ, ଛଉ |
| ଆଇ / ୪ | ଆଇ, ମାଇ, | ଆଇ, ମାଇ |
| ଉଆ/ ୧୦ | ଉଆଁସ, ଗୁଆ | ଉଆଁସ, ଗୁଆ |
| ଉଇ/ ୧୧ | ଉଇ, ଜୁଇ | ଉଇ, ଜୁଇ |

(ଖ) କେବଳ ଓଡ଼ିଆରେ :

| | ଓଡ଼ିଆ | କୋଶଲୀ ଭାଷା |
|---|---|---|
| ଆଉ) | କାଉ | କୁଆ (୧୦) |
| ଉଅ) | କୁଅଁ | ଚୁଆଁ (୧୦) |
| ଏଉ) | ଦେଉଳ | ଦଉଲ (୨) |
| ଓଇ) | କୋଇଲି | କୁଇଲି (୧୧) |

(ଗ) କେବଳ ପଶ୍ଚିମାଞ୍ଚଳୀୟ ଓଡ଼ିଆରେ

| | |
|---|---|
| ଅଏ) | ଆଏଜ୍, ବଏନା, ମଏନା |
| ଆଏ) | ବାଏଜ୍, ଲାଏଜ୍ |
| ଉଓ) | ପୁଓ |

ସ୍ୱରକ୍ରମର ଏଇ ମୌଳିକ ପାର୍ଥକ୍ୟ କୋଶଲୀ ଭାଷା ଓ ପୂର୍ବାଞ୍ଚଳୀୟ ଓଡ଼ିଆକୁ ପରସ୍ପରଠାରୁ ଦୁରେଇ ନେଇଛି । ଏଇ ପାର୍ଥକ୍ୟ ନିର୍ଦ୍ଦିଷ୍ଟ ସୂତ୍ର ଓ ଶୃଙ୍ଖଳାବଦ୍ଧ । ବିଭିନ୍ନ ପ୍ରକାର୍ଯ୍ୟଦ୍ୱାରା ଉଭୟ ମଧ୍ୟରେ ସାଦୃଶ୍ୟ ଓ ବୈସାଦୃଶ୍ୟ ଆଲୋଚନା କରାଯାଇପାରନ୍ତା ଓ ଆଞ୍ଚଳିକ ବାକରୀତିଗୁଡ଼ିକ ଆବିଷ୍କୃତ ହେଲେ ମାନକ ଭାଷାର ସଂବୃଦ୍ଧି ସାଧିତ ହୁଅନ୍ତା ।

*(ସପ୍ତର୍ଷି ୧୯୮୬ରେ ପ୍ରକାଶିତ)*

# କୋଶଲୀ ଭାଷାର ଲିଙ୍ଗ

॥ ୧ ॥

କୋଶଲୀ ଭାଷା ସଂପର୍କରେ ସୁଚିନ୍ତିତ ମନ୍ତବ୍ୟ ଠାରୁ ଆବେଗ ପ୍ରଣୋଦିତ ମନ୍ତବ୍ୟ ବେଶି । ଏ ସମସ୍ତ ମନ୍ତବ୍ୟକୁ ଦୁଇଟି ସଂବର୍ଗରେ ସ୍ଥାପନ କରାଯାଇ ପାରେ । ପ୍ରଥମ ସଂବର୍ଗ: ଏହା ଓଡ଼ିଆ ଭାଷା ନୁହେଁ, କୋଶଲୀ ଭାଷା । ଦ୍ୱିତୀୟ ସଂବର୍ଗ: ଏହା ଓଡ଼ିଆ ଭାଷାର ଏକ ଉପଭାଷା । ଉଭୟ ମତବାଦୀ ନିଜସ୍ୱ ଯୁକ୍ତିରେ ସୁଦୃଢ଼, ଯାହା ଥରେ ଥରେ ଅପ୍ରୀତିକର ପରିସ୍ଥିତ ସୃଷ୍ଟି ପାଇଁ ଉପାଦାନ ଯୋଗାଏ । ଏଇ ପରିସ୍ଥିତି ପାଇଁ ମୂଳତଃ ଦୁଇଟି ଶବ୍ଦ ଦାୟୀ; ଭାଷା ଓ ଉପଭାଷା । ଭାଷା ଓ ଉପଭାଷା ଶବ୍ଦ ଦୁଇଟିର ଆବେଗାତ୍ମକ ଗୁରୁତ୍ୱ ଯାହା ଥାଉ ନା କାହିଁକି ଜଣେ ଭାଷାବିତ ନିକଟରେ ଉଭୟଟି ସମାନ । ଏକ ବୃହତ୍ତର ଭାଷା ଗୋଷ୍ଠୀର ଲୋକେ ଯଦି ତାଙ୍କ ଭିତରେ ଥିବା ଆଞ୍ଚଳିକ ବାକ୍‌ରୀତିଗୁଡ଼ିକୁ ପରସ୍ପର ସହଜରେ ବୁଝିପାରନ୍ତି, ସେହି ବୃହତ୍ତର ଗୋଷ୍ଠୀର ଆଞ୍ଚଳିକ ବୈଚିତ୍ର୍ୟଗୁଡ଼ିକୁ ଉପଭାଷା ଓ ତାକୁ ଭାଷା କୁହାଯାଇପାରିବ । ସମୟ ଆସେ ଏଇ ବୁଝାମଣାରେ ଅସୁବିଧା ହୁଏ । ଆଞ୍ଚଳିକ ବାକ୍‌ରୀତିଗୁଡ଼ିକୁ ବୁଝିବା ପାଇଁ ସ୍ୱତନ୍ତ୍ର ପ୍ରୟାସ ଲୋଡ଼ା ହୁଏ । ସେତେବେଳେ ବୃହତ୍ତର ଭାଷା ଗୋଷ୍ଠୀର ଉପଭାଷା ଭାବରେ ତାହା ଆଉ ସ୍ଥାପିତ ହୋଇ ନ ପାରେ । କୋଶଲୀ ଭାଷା ପାଇଁ ଏଇ ପରିସ୍ଥିତି ଆସିଛି କି ? ଯଦି ଆସିଛି ଇତିହାସର କେଉଁ ସମୟ ବିନ୍ଦୁରୁ ଓ ତାହାପ୍ରତି ସମୟ ଉଦାସୀନ କି ? ଏହାର ଅନୁସନ୍ଧାନ ପାଇଁ ଏଇ ପରିସ୍ଥିତିରୁ ନିରାସକ୍ତ ଦୂରତାରେ ପଶ୍ଚିମ ଓଡ଼ିଶାର ସମାଜତାତ୍ତ୍ୱିକ ଇତିହାସ ଅଧ୍ୟୟନ କରାଯାଇପାରେ ।

ପଶ୍ଚିମ ଓଡ଼ିଶାରେ ଆର୍ଯ୍ୟ ସମାଗମନ ଖ୍ରୀଷ୍ଟ ପୂର୍ବ ଶତାବ୍ଦୀରୁ ଅଦ୍ୟାବଧି ଅବ୍ୟାହତ । ପୂର୍ବୋକ୍ତ: ଉଭୟ ମତବାଦୀ ଏ କଥାରେ ସହମତ । ପ୍ରଥମ ଆର୍ଯ୍ୟଗୋଷ୍ଠୀ କେଉଁ ପଥ ଦେଇ ଏଠାକୁ ଆସିଛନ୍ତି, ତାହା ଏବେବି ଅନିର୍ଦ୍ଧାରିତ । ତେବେ ତାଙ୍କ ସହ ଆଦିବାସୀ ଭାଷାର ସଂଘର୍ଷ ଓ ସମନ୍ୱୟରୁ ଏକ ସ୍ୱତନ୍ତ୍ର ବାକ୍‌ରୀତିର ଉନ୍ମେଷ ଘଟିଥିବ । ସେଇ ଆଞ୍ଚଳିକ ବାକ୍‌ରୀତିର ପ୍ରବଣତା ପ୍ରଥମ ଆର୍ଯ୍ୟଗୋଷ୍ଠୀଙ୍କ ଭାଷା ଆଡ଼କୁ ମୁହାଁଇ ଯାଇଥିବ । ତେବେ ସାଧାରଣ ଜୀବନଯାପନର ସୁବିଧା ଦୃଷ୍ଟିରୁ ଆଦିବାସୀ ଭାଷାକୁ ବି ବେଶ ନିଜର କରିଥିବ । ଆର୍ଯ୍ୟମାନେ ସାଧାରଣ ଜୀବନ ଯେଉଁ ଭାଷାରେ ଯାପନ କରନ୍ତୁ ନା କାହିଁକି; ତାଙ୍କ ସାଂସ୍କୃତିକ ଜୀବନ ତତ୍‌କାଳର ଆର୍ଯ୍ୟ ଭାଷାରେ (ସଂସ୍କୃତ) ପ୍ରକାଶିତ ହେଉଥିବ । ଏହା ମଧ୍ୟରେ ଆର୍ଯ୍ୟାୟନ ଉଭୟ ଦିଗରୁ ହୋଇଥିବ । ସମୁଦ୍ର ଆଡ଼କୁ ମୁଁହେଇଁ ଯାଇଥିବା ଆର୍ଯ୍ୟମାନେ ପୁଣି ପାର୍ବତ୍ୟ ଅଞ୍ଚଳକୁ ଫେରିଥିବେ ରାଜା ମାନଙ୍କ ନିମନ୍ତ୍ରଣରେ କିମ୍ବା ମାଟିର ଲୋଭରେ । କେନ୍ଦ୍ରାଞ୍ଚଳରୁ ଆର୍ଯ୍ୟମାନେ ଚୌହାନ ରାଜାମାନଙ୍କ ସାହାଯ୍ୟ ଓ ନିମନ୍ତ୍ରଣ କ୍ରମେ କୋଶଳକୁ ଆସିଥିବ । ସେମାନଙ୍କ ସହ ଆସିଥିବ ଆଧୁନିକ ଓଡ଼ିଆର ପ୍ରତ୍ନରୂପ ଓ ଛତିଶଗଡ଼ୀର ପ୍ରତ୍ନରୂପ । ସେମାନଙ୍କ ସହ ସଂଘର୍ଷରୁ, ସଂଶ୍ଳେଷଣରୁ ସେ ସମୟର ବାକ୍‌ରୀତି ପୁଣି ଆର୍ଯ୍ୟାୟିତ ହୋଇଥିବ । ଏପରି ଘଟିଥିବ ତୃତୀୟଥର, ଚତୁର୍ଥଥର ଓ ଏବେବି । ଏମିତି ଏକ ସଂକ୍ରମଣଶୀଳ ଭାଷାର ସ୍ୱତନ୍ତ୍ର ଅନ୍ତଃସ୍ଥ ସୂତ୍ର ଓ ବାକ୍‌ରୀତିକୁ ସମୟ ନିଶ୍ଚୟ ପରିବର୍ତ୍ତିତ କରିଥିବ । ଯାହାର ଐତିହାସିକ ଆଲୋଚନା 'ଏବେ ପ୍ରାୟତଃ ଅସମ୍ଭବ ।

ଓଡ଼ିଆ ଭାଷାର ଐତିହାସିକ ବିବର୍ତ୍ତନ ପ୍ରଦର୍ଶନ ପାଇଁ ଅଭିଲେଖ ବା ତାମ୍ରଫଳକ ଗୁଡ଼ିକ ଯେଉଁ ଭୂମିକା ଗ୍ରହଣ କରିଛି ପଶ୍ଚିମ ଓଡ଼ିଶାର ଅଭିଲେଖ ବା ତାମ୍ରଫଳକଗୁଡ଼ିକର ସେପରି ଆଲୋଚନା କରାଯାଇ ପାରିବ ନାହିଁ । ଏହାର କାରଣ ଦୁଇଟି: ( ୧ ) ଆର୍ଯ୍ୟରାଜାମାନେ ଅଭିଲେଖ ବା ତାମ୍ରଫଳକର ଭାଷାରେ ଆର୍ଯ୍ୟାୟିତ । ଏହାର କାରଣ ହୋଇପାରେ ଦାତା ଓ ଗ୍ରହୀତା ଉଭୟେ ଆର୍ଯ୍ୟ । ( ୨ ) ସେଗୁଡ଼ିକ ଭାଷାର ଐତିହାସିକ ବିବର୍ତ୍ତନ ପ୍ରଦର୍ଶନ ପାଇଁ ଅପ୍ରଚୁର ।

ଦ୍ୱିତୀୟତଃ ପଶ୍ଚିମ ଓଡ଼ିଶାର ଲିଖିତ ପ୍ରାଚୀନ ସାହିତ୍ୟ ଏହାର ଐତିହାସିକ ବିବର୍ତ୍ତନ ପ୍ରଦର୍ଶନର ସହାୟକ ନୁହେଁ । ଏକ ଲିପିଶୂନ୍ୟ ବାକ୍‌ରୀତିରେ ଲେଖିବା ପାଇଁ ଯଦି କେହି ପ୍ରାଚୀନ ଗୋଷ୍ଠୀର ଆର୍ଯ୍ୟ ଇଚ୍ଛାକରିଥିବେ, ତେବେ ତାଙ୍କ ସାମ୍ନାରେ ନବାଗତ ମାନଙ୍କର ନୈଷ୍ଠିକ ଆର୍ଯ୍ୟତ୍ୱ ପ୍ରଲୋଭିତ କରିଥିବ, ଏ ଘଟଣା ପଞ୍ଚଦଶ ଶତାବ୍ଦୀର ପରେ ହିଁ ଘଟିଥିବ । କାହିଁକି ନା ତା ପୂର୍ବରୁ ପ୍ରାକୃତ ଭାଷାରେ ଲେଖିବା ପରଂପରା ସେତେ ସୁଦୃଢ଼ ନ ଥିଲା । ପଶ୍ଚିମ ଓଡ଼ିଶାରେ ଅଦ୍ୟାବଧି ପ୍ରତିଷ୍ଠିତ ଆଦିକବି ଚୈତନ୍ୟ ଦାସ ଓ ନୃସିଂହ ମହାତ୍ମ୍ୟର ଲେଖକ ଯୋଗୀ ଦାସ ଏଇ ଅସୁବିଧାର ସମ୍ମୁଖୀନ ହୋଇଥିବେ । ଯାହା ଫଳରେ ସାରସ୍ୱତ ଜୀବନରେ ନିଜର ମୌଖିକ ଭାଷାପ୍ରତି ବିଶ୍ୱସ୍ତ ନ ଥିବେ କିମ୍ବା ଏହା ହୋଇପାରେ ଚୈତନ୍ୟ ଦାସଙ୍କ ପୂର୍ବପୁରୁଷ ଏ ଅଞ୍ଚଳକୁ ଓଡ଼ିଶାର ପୂର୍ବାଞ୍ଚଳରୁ ଆସିଥିବା ନବୀନତର ଆର୍ଯ୍ୟ ଥିବେ ଓ ଯୋଗୀ ଦାସଙ୍କ ରଚନାକୁ ଜଣେ ଏମିତି ଓଡ଼ିଶାରୁ ଆଗତ ପଣ୍ଡିତ ଅତ୍ୟଧିକ ସଂଶୋଧନ କରିଥିବେ । ଅବଶ୍ୟ ଏହା ନୁହେଁ ଯେ କୋଶଲୀ ଭାଷାର ଐତିହାସିକ ବିବର୍ତ୍ତନ ଘଟିନି । କୁହାଯାଇ ପାରେ ସମସ୍ତ କାଳରେ ଏହି ଭାଷାର ଐତିହାସିକ ସଂଘର୍ଷ ଓ ବିବର୍ତ୍ତନ ଘଟିଛି । ପ୍ରଥମ ଆର୍ଯ୍ୟଗୋଷ୍ଠୀଙ୍କ ସହ ସଂଘର୍ଷ ଓ ସମନ୍ୱୟରୁ ଜନ୍ମ ନେଇଥିବା ସ୍ୱତନ୍ତ୍ର ବାକ୍ ରୀତି ପୁଣି ଦ୍ୱିତୀୟ ଗୋଷ୍ଠୀସହ ଓ ଦ୍ୱିତୀୟ ଗୋଷ୍ଠୀର ପ୍ରଭାବରେ ଉତ୍ପନ୍ନ ଭାଷାର ପୁଣି ତୃତୀୟ ଆର୍ଯ୍ୟ ଗୋଷ୍ଠୀ ସହ ସଂଘର୍ଷ ଘଟୁଛି ଓ ତାର ସ୍ୱକୀୟ ସତ୍ତା ହରାଇବାକୁ ପଡୁଛି ।

ଏଇ ଆଲୋଚନାପରେ ଲକ୍ଷ୍ୟ କରାଯାଇ ପାରେ କୋଶଲୀ ଭାଷା ସଂପର୍କରେ ତଥ୍ୟ ସଂଗ୍ରହ କେତେ ଦ୍ୱନ୍ଦ୍ୱସଂକୁଳ । କୌଣସି ତଥ୍ୟକୁ ଆଲୋଚନା ପରିସରକୁ ନେଲାବେଳେ କେତୋଟି ଦିଗ ପ୍ରତି ସତର୍କ ରହିବା ଉଚିତ ।

୧) ସଂଗୃହିତ ଅଞ୍ଚଳରେ ଆର୍ଯ୍ୟାୟନ କେବେଠୁ ହୋଇଛି ?

୨) ତଥ୍ୟ ଦାତାଙ୍କର ପାରିବାରିକ ଭାଷା କଣ ?

୩) ତାଙ୍କ ବାଚିକତାର ବ୍ୟକ୍ତିକ ରୁଚି ଓ ଶିକ୍ଷାଗତ ଯୋଗ୍ୟତା ।

ଆଜି ପର୍ଯ୍ୟନ୍ତ ଗବେଷକମାନଙ୍କର ଏହାପ୍ରତି ଉଦାସୀନତା ଆଶ୍ଚର୍ଯ୍ୟଭାବେ ଦୁଃଖଦ । ଏବେ କାହିଁକି କେତେକଙ୍କ ପାଇଁ କୋଶଲୀ ଏକ ଭାଷା ଓ ଅନ୍ୟମାନଙ୍କ ପାଇଁ ଉପଭାଷା ହୁଏ, ସହଜରେ କୁହାଯାଇ ପାରିବ । ଏଥିପାଇଁ ଦାୟୀ ତାଙ୍କର ତଥ୍ୟଦାତା ଚୟନ । ଖଡ଼ିଆଳର କେଉଁ ଜଣେ ଆଦିବାସୀ କିମ୍ୱା କଳାହାଣ୍ଡିର ଜଣେ ଗଣ୍ଡଙ୍କ କଥିତ ଭାଷାକୁ ଭିତ୍ତିକରି ଆଲୋଚନା କଲେ ପଶ୍ଚିମାଞ୍ଚଳ ଓଡ଼ିଆ ଆଉ ଉପଭାଷା ନୁହେଁ । ଏହା ଏକ ସ୍ୱତନ୍ତ ଭାଷା, କୋଶଲୀ । ସୋନପୁରର ଜଣେ ବ୍ରାହ୍ମଣ କିମ୍ୱା ସମ୍ୱଲପୁରର ଜଣେ କରଣଙ୍କର କଥିତ ଭାଷାକୁ ଭିତ୍ତିକରି ଆଲୋଚନା କଲେ ଏହା ପଶ୍ଚିମାଞ୍ଚଳୀୟ ଓଡ଼ିଆ, ଏକ ଉପଭାଷା ।

ତେବେ ଏ ସମସ୍ତ ମଧ୍ୟରେ ଏଇ ଭାଷା/ଉପଭାଷାର ଏକ ନିଜସ୍ୱ ପ୍ରବଣତା ଅଛି । ସମୟ ଓ ସଂକ୍ରମଣକୁ ଅସ୍ୱୀକାର କରି ଯାହା ଆଜିପର୍ଯ୍ୟନ୍ତ ଗଢ଼ି ଆସିଛି । ଅନ୍ତର୍ନିହିତ ସୁତ୍ର ରଖିଛି, ଉଚ୍ଚାରଣ ପ୍ରବୃତ୍ତି ରଖିଚି । ଯାହା ଓଡ଼ିଆ ଠାରୁ ଭିନ୍ନ ମନେ ହୁଏ । ଏଇ ଭିନ୍ନତା ପ୍ରଦର୍ଶନ ଓ ଭାଷାର ଅନ୍ତର୍ନିହିତ ସୁତ୍ର ଆବିଷ୍କାର ଉପସ୍ଥାପିତ ଆଲୋଚନାର ଲକ୍ଷ୍ୟ । କୌଣସି ଜୀବନ୍ତ ଭାଷାର ବର୍ଣ୍ଣନା ଓ ଶେଷ ନୁହେଁ । ଏହା ମଧ୍ୟ ସେପରି; ଏକ ପ୍ରଚେଷ୍ଟା ମାତ୍ର ।

|| ୨ ||

କୋଶଲୀ ଭାଷାରେ ଲିଙ୍ଗ ଏକ ବ୍ୟାକରାଣିକ ସଂବର୍ଗ ନୁହେଁ । ଠିକ୍ ଓଡ଼ିଆ ପରି ବିଶେଷଣ ବ୍ୟତୀତ ଅନ୍ୟ କାହା ସହିତ ଲିଙ୍ଗର ଅନ୍ୱିତି ଆକାଂକ୍ଷା କରାଯାଏ ନାହିଁ । ଏଇ ଅନ୍ୱିତି ସଂସ୍କୃତ କିମ୍ୱା ହିନ୍ଦି ପରି ସ୍ଥିର ନିଶ୍ଚିତ ନୁହେଁ, ଓଡ଼ିଆ ପରି ଇଚ୍ଛାଧୀନ । ଯେହେତୁ ସମସ୍ତ ବିଶେଷଣ ପଦର ଲିଙ୍ଗଭେଦ ଓଡ଼ିଆ କିମ୍ୱା କୋଶଲୀରେ ନାହିଁ, ଏଣୁ ଏ ଅନ୍ୱିତି ସବୁବେଳେ ସଂଭବ ହୁଏନି । ଯେମିତି :

| ଓଡ଼ିଆ | କୋଶଲୀ |
|---|---|
| କ) ଭଲ ଝିଅ | କ) ବନେ ଟୁକେଲ |
| ଖ) ଭଲ ପିଲା | ଖ) ବନେ ପିଲା |

ଓଡ଼ିଆ ଓ କୋଶଲୀ ଭାଷାର ଲିଙ୍ଗ ନିର୍ଦ୍ଧାରଣ ଶାରୀରିକ । ସଂସ୍କୃତ ପରି 'ଦାର' ଶବ୍ଦ ପୁଂଲିଙ୍ଗ ହୁଏନି, ହିନ୍ଦି ପରି 'ପୋଲିସ' ସ୍ତ୍ରୀ ଲିଙ୍ଗ ହୁଏନି କିମ୍ବା ଇଂରାଜୀ ପରି 'Ship' ଶବ୍ଦ ସ୍ତ୍ରୀଲିଙ୍ଗ ହୁଏନି । ଶବ୍ଦର ଲିଙ୍ଗ ତାର ଯୌନ ଲକ୍ଷଣ ଅନୁସାରେ ନିର୍ଦ୍ଧାରିତ ହୁଏ । ଏଣୁ ପ୍ରତ୍ୟେକ ପ୍ରାଣୀ ବାଚକ ଶବ୍ଦ ପାଇଁ ପଶ୍ଚିମାଞ୍ଚଳୀୟ ଓଡ଼ିଆରେ ଦୁଇଟି ଲେଖାଏଁ ଲିଙ୍ଗ ବୋଧକ ଶବ୍ଦ ଆଭିଧାନିକ ଭାବରେ ରହିଛି ।

| ଓଡ଼ିଆ | କୋଶଲୀ | କେବଳ କୋଶଲୀ |
|---|---|---|
| ବାପା-ମାଁଆ | ବୁଆ-ମାଁ | ଗଁଡ଼ା-ଗାଁଡ଼ି |
| ଗାଈ-ବଳଦ | ଗାଏ-ବଲଦ୍ | |
| ବର-କନ୍ୟା | ବର-କନିଆଁ | |
| ପୁଅ-ଝିଅ/ବୋହୂ | ପୁଓ-ଝି/ବହ | |

ଯେଉଁ କ୍ଷେତ୍ରରେ ଯୌନ ଲକ୍ଷଣ ଜାଣିବା ପାଇଁ ଅସୁବିଧା ଅଛି, ସେମିତି କେତେକ ଚଢ଼େଇ, ଦୂରସ୍ଥ କୌଣସି ପଶୁ କିମ୍ବା ଛୋଟ ଜୀବ (ପିମ୍ପୁଡ଼ି, ମାଙ୍କଡ଼ସା) ସେ କ୍ଷେତ୍ରରେ ଯଦି ସ୍ତ୍ରୀ ବାଚକ ଶବ୍ଦ ବ୍ୟବହାର ପାଇଁ ଆବଶ୍ୟକ ହୁଏ ତେବେ ବର୍ଣ୍ଣନାତ୍ମକ ବିଶେଷକ ବ୍ୟବହୃତ ହୁଏ । ଏହା ଓଡ଼ିଆ କ୍ଷେତ୍ରରେ ମଧ୍ୟ ସମାନ ।

| ଓଡ଼ିଆ | କୋଶଲୀ |
|---|---|
| ଚଢ଼େଇ | ଚେରେ |
| ବାଛୁରୀ | ଦାମୁର୍ |
| ପିମ୍ପୁଡ଼ି | ଘୁଁଟି |
| ଶୁଆ | ରୂପା/ମିଟୁ |

ଏ ସମସ୍ତ ପାଇଁ ଓଡ଼ିଆରେ ଅଣ୍ଡିରା / ମାଈ ବ୍ୟବହୃତ ହେଲାପରି କୋଶଲୀରେ ଅଁଡରା / ମାଇ ବ୍ୟବହୃତ ହୁଏ ।

ଯେତେବେଳେ ଗଧ, ମାଙ୍କଡ଼, କୁକୁର, ଘୁସୁରୀ ପ୍ରଭୃତି ଶବ୍ଦ ମଣିଷ ପାଇଁ ବ୍ୟବହୃତ ହୁଏ, ସେତେବେଳେ ଏ ଗୁଡ଼ିକର ଲିଙ୍ଗ ପରିବର୍ତ୍ତନ ହୁଏ । ଏହି ପରିବର୍ତ୍ତନର ନିୟମ ପରେ ଆଲୋଚିତ । ତେବେ ଏଠାରେ କହି ରଖିବା ଉଚିତ

ଏହି ଶବ୍ଦ ଗୁଡ଼ିକ ବ୍ୟବହାର ହୋଇଥାଏ ବିଶେଷଣ ରୂପରେ । ଏଣୁ ସ୍ୱଭାବତଃ ବିଶେଷଣ ପରି ରୂପାନ୍ତରିତ ହୁଏ ଯେପରି :

| ପୁଲିଂଗ | ସ୍ତ୍ରୀ ଲିଂଗ |
|---|---|
| ଗଧ | ଗଧି |
| ମାଁକଡ଼୍ | ମାଁକ୍ଡ଼େନ୍, ମାଁକ୍ଡ଼ି |
| କୁକୁର୍ | କୁକୁରେନ୍, କୁକୁର୍ନି |
| ଘୁସ୍ରା | ଘୁସ୍ରେନ୍, ଘୁସରି |

ପୂର୍ବରୁ କୁହାଯାଇଛି ପ୍ରାଣୀବାଚକ ଶବ୍ଦ ପାଇଁ କୋଶଲୀ ଭାଷାର ଅଭିଧାନରେ ଲିଙ୍ଗବୋଧକ ଦୁଇଟି ଲେଖାଏଁ ଶବ୍ଦ ରହିଛି । ଯେଉଁଠି ଏଇ ଆଭିଧାନିକ ଶବ୍ଦର ଅଭାବ ରହିଛି, ଅଭିଧାନିକ ଅଭାବର ପୂରଣ ପାଇଁ କେତୋଟି ପର ପ୍ରତ୍ୟୟ ବ୍ୟବହୃତ ହୁଏ । ଏଇ ପ୍ରତ୍ୟୟଗୁଡ଼ିକର ପରସ୍ପର ବିତରଣ ନିମ୍ନରେ ଆଲୋଚିତ ହେଲା :

ପର ପ୍ରତ୍ୟୟ / ଇ /

ଯେଉଁ କ୍ଷେତ୍ରରେ ସ୍ତ୍ରୀଲିଙ୍ଗ ବାଚକ ବିଶେଷ୍ୟ ସହ ବିଶେଷଣର ଅନ୍ୱିତି ଆକାଂକ୍ଷା କରାଯାଏ ଓ ଆକାଂକ୍ଷିତ ଶବ୍ଦର ପୁଲିଙ୍ଗ ବାଚକ ଶବ୍ଦ ଶେଷରେ 'ଆ' କିମ୍ବା 'ଉ' ଥାଏ, ସେଗୁଡ଼ିକର ରୂପ ସ୍ୱନିମିକ ପରିବର୍ତ୍ତନ ହୁଏ ଓ 'ଇ' ଯୋଗ ହୁଏ, ଯେମିତି :

| କୋଶଲୀରେ ପୁଲିଂଗ | ସ୍ତ୍ରୀଲିଂଗ | ରୂପସ୍ୱନିମିକ ପରିବର୍ତ୍ତନ |
|---|---|---|
| (ପାଗଳ) ବଅରା | ବାଏରି | ଅ – ଇ |
| (କାଳ) ଭଏଁରା | ଭଏଁରି | ଆ – ଇ |
| (ଛୋଟା) ଛୁଟା | ଛୁଟି | ଆ – ଇ |
| (ହସୁଥିବା ପିଲା) ହଁସ୍ରୁ | ହଁସ୍ରି | ଉ – ଇ |
| (ବୁଲୁଥିବା ପିଲା) ବୁଲୁ | ବୁଲି | ଉ – ଇ |

ବ୍ୟତିକ୍ରମ କେବଳ ଯଦି ପୂର୍ବୋକ୍ତ ବିଶେଷଣର ଉପଧାବର୍ଣ୍ଣ ମହାପ୍ରାଣ

ହୋଇଥାଏ ଓ ଶେଷରେ ଆ' ଥାଏ ତେବେ ଏଇ ଆ - ଏ ହୁଏ ଓ 'ଇ' ଯୋଗ ହୁଏ । ଯେମିତି:

| ପୁଲିଂଗ | ସ୍ତ୍ରୀଲିଂଗ | ରୂପସ୍ୱନିମିକ ପରିବର୍ତ୍ତନ |
|---|---|---|
| (ରୁଗ୍‌ଣ) ରୁଘା | ରୁଘେଇ | ଆ+ଇ/ଏଇ/ |
| ବଥା | ବଥେଇ | ଆ+ଇ/ଏଇ/ |
| ଡ଼ର୍‌ହା | ଡ଼ର୍‌ହେଇ | ଆ+ଇ/ଏଇ/ |

<u>ପର ପ୍ରତ୍ୟୟ / ଏନ୍ /</u>

ବୃତ୍ତି ଓ ଜାତି ବାଚକ ବିଶେଷ୍ୟ ଗୁଡ଼ିକର ସ୍ତ୍ରୀଲିଙ୍ଗ ବାଚକ ଶବ୍ଦ ନଥିଲେ / ଏନ୍ / ପରପ୍ରତ୍ୟୟ ଯୋଗହୋଇ ସ୍ତ୍ରୀଲିଙ୍ଗ ବାଚକ ଶବ୍ଦ ସୃଷ୍ଟି ହୁଏ ।

| ପୁଲିଂଗ | ସ୍ତ୍ରୀଲିଂଗ | ରୂପସ୍ୱନିମିକ ପରିବର୍ତ୍ତନ | |
|---|---|---|---|
| (ଗଉଡ଼)ଗଉର୍ | ଗଉରେନ୍ | | |
| (ବ୍ରାହ୍ମଣ) | ବାମ୍‌ହନ୍ | ବାମ୍‌ହନେନ୍ | |
| (ଧୋବା) | ଧୁବା | ଧୁବେନ୍ | ଆ - ଏ |
| (ସଉରା) | ସଅଁରା | ସଅଁରେନ୍ | ଆ - ଏ |
| (ତେଲି) | ତେଲି | ତେଲେନ୍ | ଇ - ଏ |
| (ଘାସି) | ଘାସି/ଘଁସିଆ | ଘଁସିଏନ୍ | ଇ - ଏ |
| (ଭିକାରୀ) | ଭିକାରି | ଭିକାରେନ୍ | ଇ - ଏ |

ଯେଉଁ କ୍ଷେତ୍ରରେ ସ୍ତ୍ରୀଲିଙ୍ଗ ବାଚକ ଶବ୍ଦ ସହ କୃଦନ୍ତ କିମ୍ବା ତଦ୍ଧିତ ବିଶେଷଣର ଅନ୍ୱିତି ଆକାଂକ୍ଷା କରାଯାଏ, ସେ କ୍ଷେତ୍ରରେ / ଇଏନ୍ / ପର ପ୍ରତ୍ୟୟ ଯୋଗ ହୁଏ ଓ ଶବ୍ଦଟି ନିଷ୍ପନ୍ନ ହୁଏ । ଯେମିତି :

| ପୁଲିଂଗ | ସ୍ତ୍ରୀଲିଙ୍ଗ | ରୂପ ପରିବର୍ତ୍ତନ |
|---|---|---|
| ରାଁଧନିଆଁ | ରାଁଧନିଏନ୍ | ଇଆ - ଇଏନ୍ |
| ହଲିଆ | ହଲିଏନ୍ | ଇଆ - ଇଏନ୍ |
| ଚୁଗଲିଆ | ଚୁଗ୍‌ଲିଏନ୍ | ଇଆ - ଇଏନ୍ |

ବ୍ୟତିକ୍ରମ କେବଳ ଯଦି ଶେଷରେ ଉଆ ଥାଏ ତେବେ / ଇଏନ୍ / ଯୋଗ ନ ହୋଇ / ଉଏନ୍ / ହୁଏ ଯେମିତି :

| | |
|---|---|
| ଡକୁଆ | ଡକୁଏନ୍ |
| ଭକୁଆ | ଭକୁଏନ୍ |

ପୂର୍ବରୁ କୁହାଯାଇଛି ସମସ୍ତ ବିଶେଷଣ ପଦର ଲିଙ୍ଗ ଭେଦ କୋଶଲୀ ଭାଷାରେ ନାହିଁ । ଯେଉଁ ବିଶେଷଣ ପଦଗୁଡ଼ିକ ବିଶେଷ୍ୟ ଭାବରେ ବ୍ୟବହୃତ ହୋଇପାରନ୍ତି ପ୍ରାୟତଃ ସେଗୁଡ଼ିକର ଲିଙ୍ଗବାଚକ ଯୁଗ୍ମ ଶବ୍ଦ ଉପଲଭ୍ୟ । ଅନ୍ୟ ସମସ୍ତ କ୍ଷେତ୍ରରେ ଉଭୟ ସ୍ତ୍ରୀଲିଙ୍ଗ ଓ ପୁଲିଂଗ ପାଇଁ ସମାନ ବିଶେଷଣ ବ୍ୟବହୃତ ହୁଏ । ଲିଙ୍ଗ ଭିତ୍ତିରେ କୋଶଲୀ ଭାଷାର ବିଶେଷଣକୁ ବର୍ଣ୍ଣନା କରାଯାଇ ପାରିବ ନାହିଁ । ଯେମିତି:

| ପୁଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|
| ସୁତର ବଳଦ | ସୁତର ଗାଏ |
| ବଡ଼୍ ପିଲା | ବଡ଼୍ ଟୁକେଲ |
| ଏନ୍ତା ଲୋକ | ଏନ୍ତା ମାଏଝି .... ଇତ୍ୟାଦି । |

ଏବେ କୁହାଯାଇପାରେ କୋଶଲୀରେ ଲିଙ୍ଗ ଏକ କଠିନ ବ୍ୟାକରଣିକ ସଂବର୍ଗ ନୁହେଁ । ଏହାର ପ୍ରତ୍ୟୟମାନଙ୍କର ବିତରଣ ନିୟମବଦ୍ଧ । ତେବେ ଏ ପ୍ରବନ୍ଧର ସୂତ୍ର ଓ ଶୃଙ୍ଖଳା ଆଲୋଚନା ପାଇଁ ଆପଣମାନଙ୍କ ନିକଟରେ ଉନ୍ମୁକ୍ତ ରହିଲା ।

*(ସପ୍ତର୍ଷି ମଇ ୧୯୮୬)*

# କୋଶଲୀ ଭାଷାର ବଚନ

ଏକ ବ୍ୟାକରଣିକ ସଂବର୍ଗ ଭାବରେ ଓଡ଼ିଆ ଓ କୋଶଲୀ ଭାଷାରେ ବଚନର ଭୂମିକା ବେଶ ଗୁରୁତ୍ୱପୂର୍ଣ୍ଣ । ବଚନ ଅନୁସାରେ ବିଶେଷ୍ୟର କାରକ-ବିଭକ୍ତି ପ୍ରତ୍ୟୟ ଓ କ୍ରିୟାର ପୁରୁଷ-ବଚନ ପ୍ରତ୍ୟୟ ନିର୍ବାଚିତ ହୁଏ ।

ଯେମିତି: ପିଲାକେ ଦିଅ - ପିଲାମାନକୁ /କେ ଦିଅ

ଝନେ ଲୋକ ଯାଇଛେ - ଲୋକମାନେ ଯାଇଛନ୍ ।

ଏଇ ନିର୍ବାଚନ କ୍ଷମତା ଆଲୋଚନା କଲେ କୋଶଲୀ ଭାଷାରେ ବଚନ ଦୁଇ ପ୍ରକାର: - ଏକ ବଚନ ଓ ବହୁ ବଚନ । ଦ୍ୱିବଚନ ନିର୍ଦ୍ଦେଶକ କେତୋଟି ବିଶେଷଣ ଥିଲେ ହେଁ କ୍ରିୟାର ପୁରୁଷ ବଚନ ପ୍ରତ୍ୟୟ ଗ୍ରହଣରେ ତାହା ବହୁବଚନର ଅନୁରୂପ । ଯେମିତି :

ବଲଦ୍ ଗୁଟେ ଯଉଛେ

ବଲଦ୍ ହଲେ ଯଉଛନ୍

ବଲଦ୍ ମାନେ ଯଉଛନ୍

କୋଶଲୀରେ ବିଶେଷ୍ୟ ପ୍ରତିପାଦକ ସବୁବେଳେ ଏକ ବଚନ । ବର୍ଣ୍ଣନାତ୍ମକ ' ପଟେ, ଗୁଟେ, ଝନେ, ଖଁଡ଼େ, ଏଖେଇ, ଏକ୍ଲା ଇତ୍ୟାଦି / ବିଶେଷ୍ୟର ପୂର୍ବରେ କିମ୍ୱା ପରେ ରହି ଏକ ବଚନ ପ୍ରତିପାଦନ କରନ୍ତି । ବିଶେଷ୍ୟ ପୂର୍ବରେ ସ୍ଥାପିତ ହେଲେ ଏମାନଙ୍କର ଭୂମିକା ଠିକ୍ ବିଶେଷଣ ପରି ଓ ପରେ ବ୍ୟବହୃତ ହେଲେ ଏମାନେ ଅନିର୍ଦ୍ଦିଷ୍ଟ ନିର୍ଦ୍ଦେଶକ ଭାବରେ ଟା, ଟି, ଟେ, ଠିକ୍ ଓଡ଼ିଆ ପରି କୋଶଲୀ ଭାଷାରେ ମଧ୍ୟ ରହିଛି । ଟା, ଟି, ନିର୍ଦ୍ଦିଷ୍ଟ ନିର୍ଦ୍ଦେଶକ ଭାବରେ ଓ ଟେ ଅନିର୍ଦ୍ଦିଷ୍ଟ

ନିର୍ଦ୍ଦେଶକ ଭାବରେ ବ୍ୟବହୃତ । ପୂର୍ବୋକ୍ତ ବର୍ଣ୍ଣନାତ୍ମକ ଶବ୍ଦମାନଙ୍କର ବିତରଣ ଏହିପରି :

| | |
|---|---|
| /ଗୁଟେ/ | ସାଧାରଣ ଏକ ବଚନ |
| /ପଟେ/ | ମନୁଷ୍ୟେତର ପ୍ରାଣୀବାଚକ |
| /ଝନେ/ | ମନୁଷ୍ୟ ବାଚକ |
| /ଖଁଡ଼େ/ | ବସ୍ତୁବାଚକ |
| /ଏଖେଇ, ଏକଲା/ | ବିଶେଷ୍ୟ ଏକକତ୍ୱ ପ୍ରତିପାଦନ |

ଠିକ ଓଡ଼ିଆପରି କୋଶଲୀରେ ମଧ୍ୟ ସାଧାରଣ ବହୁବଚନ ଚିହ୍ନକମାନେ ସମସ୍ତ ପ୍ରାଣୀବାଚକ ଓ ଅପ୍ରାଣୀବାଚକ ବିଶେଷ୍ୟପାଇଁ ବ୍ୟବହୃତ । ଖୁବ୍ କମ କ୍ଷେତ୍ରରେ ପର ପ୍ରତ୍ୟୟ/ଏ/ଯୋଗହୋଇ ବହୁବଚନ ନିଷ୍ପନ୍ନ ହୁଏ । ଯେପରି :

| | |
|---|---|
| /ମନେ/ | ଲୋକମନେ, ଭାଲୁମନେ, ଗଛ୍‌ମନେ |
| /ଏ/ | ପିଲେ, ଲୁକେ |

କୋଶଲୀ ଭାଷାରେ ସମୂହବାଚକ ବିଶେଷ ସୃଷ୍ଟିପାଇଁ ବିଶେଷ୍ୟ ସହ କେତେକ ଶବ୍ଦ ଯୋଗହୁଏ । ଏଗୁଡ଼ିକର ବ୍ୟାକରଣିକ ପ୍ରକାର୍ଯ୍ୟ ଠିକ ବହୁବଚନ ପରି । ଓଡ଼ିଆ ପରି ଏକ ବଚନ ନୁହେଁ । ଯେମିତି :

| | | |
|---|---|---|
| /ଦଲ୍/ | ଲୋକ ଦଲ୍‌ଟେ, | ଦଲେ ଲୋକ୍ |
| /ହୁଦା/ | ଲୋକ୍ ହୁଦାଟେ, | ହୁଦେ ଲୋକ୍ |
| /ଗୁର୍‌ଦୁ/ | ଗୁର୍‌ଦୁ ଲୋକ, | ଲୋକ ଗୁର୍‌ଦୁ |
| /ବହୁତ୍/ | ବହୁତ୍ ଲୋକ, | ଲୋକ୍ ବହୁତ୍ |
| /ସବୁ/ | ସବୁଲୋକ, | ଲୋକ୍ ସବୁ |
| /ଭେଲି/ | ଲୋକ୍ ଭେଲି, | ଭେଲେ ଲୋକ୍ |

କୋଶଲୀ ଭାଷାରେ ଅପ୍ରାଣୀ ବାଚକ ବିଶେଷ୍ୟର ସଂଖ୍ୟା ବା ପରିମାଣ ପ୍ରଦର୍ଶନ ପାଇଁ ସଂଖ୍ୟାବାଚକ ବା ପରିମାଣାତ୍ମକ ବିଶେଷଣ ବ୍ୟବହାର କରାଯାଏ । ଏହା ବ୍ୟାକରଣିକ ପ୍ରକାର୍ଯ୍ୟ ଶୂନ୍ୟ । ଯେପରି :

ଗଛ୍ ଗୁଟେ ମରି ଯଉଛେ          ଗଛ ଯାକ ମରି ଯଉଛେ

ଏହି ଆଭିଧାନିକ ଭାବରେ ବ୍ୟବହୃତ ପରିଣାତ୍ମକ ଶବ୍ଦଗୁଡ଼ିକ ବିତରଣ ଏପରି:

ଅପ୍ରାଣୀ ବାଚକ ଗଣନ: ରାକ, ଦୁରା, ଯାକ, ପେଂଜା, ବୁରଇ ଇତ୍ୟାଦି

ଅପ୍ରାଣୀ ବାଚକ ଅଗଣନ ମୁର୍ତ୍ତ: ଲୁଥେ, ଚୁତେ, ମୁଁଢ଼େ, ଫେସ୍‌ରେ, ଫୁକେ, ରଂଚେ ଇତ୍ୟାଦି ।

ଅଗଣନ (ଅମୁର୍ତ୍ତ) - ସବୁ, ବହୁତ୍, ଗୁର୍‌ଦୁ, ଇତ୍ୟାଦି । ବିଶେଷ୍ୟ ଓ ବିଶେଷଣର ଦ୍ୱୈତ ପ୍ରୟୋଗ ଦ୍ୱାର ବହୁବଚନ ପ୍ରଖ୍ୟାପନ କୋଶଲୀର ଅନ୍ୟ ଏକ କୌଶଳ । ଏହା ଓଡ଼ିଆର ଅନୁରୂପ । ଏଠାରେ ଲକ୍ଷଣୀୟ, ଏପରି ଦ୍ୱୈତ ପ୍ରୟୋଗ ଅନେକ ମଧ୍ୟରୁ କେତୋଟିର ନିର୍ବାଚନ ପାଇଁ ବ୍ୟବହୃତ । ଯେମିତି :

ବୁଢ଼ାମାନେ ଯଉଛନ୍ - ବୁଢ଼ା ବୁଢ଼ା ଯାଉଛନ୍

ଫୁଲ ଦୁରା ଆନ - ଫୁଲ ଫୁଲ୍ ଆନ ।

କୋଶଲୀ ଭାଷାର ବଚନ ଏକ ବ୍ୟାକରଣିକ ସଂବର୍ଗ । ପୁଣି ଆଭିଧାନିକ ଭାବରେ ଏକ ବଚନ, ଦ୍ୱିବଚନ ଓ ବହୁବଚନ ପାଇଁ ଭିନ୍ନ ଭିନ୍ନ ପ୍ରତିଶବ୍ଦ ରହିଛି । ତାର ବିତରଣ କେତୋଟି ଉଦାହରଣ ଏହି ପ୍ରବନ୍ଧରେ ଆଲୋଚିତ । ପ୍ରସଙ୍ଗତଃ ଏଠାରେ ଉଲ୍ଲେଖଯୋଗ୍ୟ କୋଶଲୀ ଭାଷାରେ ବହୁବଚନ / ପ୍ରତ୍ୟୟ / ମାନେ / କେତେକ ଅଞ୍ଚଳରେ (କଳାହାଣ୍ଡି, ଖରିଆର) ମନୁଷ୍ୟର ସମାର୍ଥକ ଶବ୍ଦ । ସେହି ଅଞ୍ଚଳ ଗୁଡ଼ିକରେ ମନୁଷ୍ୟର ବହୁବଚନ / ମାନେ ଲୋକ୍ / । ଅନ୍ୟ ସମସ୍ତ ପ୍ରାଣୀବାଚକ ପାଇଁ ଏହା ବ୍ୟବହୃତ ନହୋଇ /ହୁଦା/, /ଦଲ୍/, /ଗୁହୁଡ଼ା/ ବ୍ୟବହୃତ ହୁଏ । ଆଶ୍ଚର୍ଯ୍ୟ କଥା ପୂର୍ବାଞ୍ଚଳୀୟ ଓଡ଼ିଆର ସମଗୋତ୍ରୀୟ ଭାଷା ମାନଙ୍କରେ ଓ ଓଡ଼ିଆରେ ବ୍ୟବହୃତ - 'ଗୁଲି, ଗୁଡ଼ି, ଗୁଡ଼ିକ" କୋଶଲୀ ଭାଷାରେ ବ୍ୟବହୃତ ହୁଏ ନାହିଁ । ଏହା ପରିବର୍ତ୍ତେ - ରାକ (ବଙ୍ଗଳା ଓ ଅହମୀୟାର 'ଗା') ବହୁବଚନ ପ୍ରତ୍ୟୟ ଭାବରେ ବ୍ୟବହୃତ । ଯେମିତି :

ଇ କଥାରାକ (ଏଇ କଥା ଗୁଡ଼ିକ)

ଓଡ଼ିଆରେ ଓ କୋଶଲୀରେ ବ୍ୟବହୃତ / ମାନେ / ପ୍ରତ୍ୟୟର ପ୍ରତିଲୋମ ଉସ୍ସ ନିରୂପଣ ପାଇଁ ପୂର୍ବୋକ୍ତ ଆଲୋଚନା ସହାୟକ । ପୂର୍ବାଞ୍ଚଳୀୟ ସମଗୋତ୍ରୀୟ

ଭାଷାଗୁଡ଼ିକରେ ନୂତନ ଓଡ଼ିଆ ଭାଷାର ଏହି ପ୍ରତ୍ୟୟ ଦକ୍ଷିଣ-ପଶ୍ଚିମ ଅଞ୍ଚଳର ଦାନ । ଏହା ଭାଷାବିତ୍ ବିଜୟ ପ୍ରସାଦ ମହାପାତ୍ର ସ୍ୱୀକାର କରନ୍ତି । (ଓଡ଼ିଆ ଭାଷାତତ୍ତ୍ୱିକ ପ୍ରବନ୍ଧ-୧୯୮୧, ପୃ-୧୬୧) ପୁଣି କୋଶଲୀ ଭାଷାର ଲୁପ୍ତପ୍ରାୟ/ରାକ/ପ୍ରତ୍ୟୟର ସଗୋତ୍ରତା ବଙ୍ଗଳା ଓ ଅହମୀୟାରେ ଲକ୍ଷ୍ୟ କରିହୁଏ । ଓଡ଼ିଆରେ / ରା କିମ୍ବା ରାକ / ପ୍ରତ୍ୟୟର ପ୍ରତିବଦଳରେ /ମାନେ/ ପ୍ରତ୍ୟୟର ବ୍ୟବହାର ସୂଚେଇ ଦିଏ । ପ୍ରତ୍ନ ଓଡ଼ିଆର ଗତି ପଶ୍ଚିମରୁ ପୂର୍ବକୁ । ଇତିହାସର ବିଦ୍ରୂପରେ ପରବର୍ତ୍ତୀ କାଳରେ ଏହାର ବିପରୀତ ଗତିଟି ଆଜି ବି ଅବ୍ୟାହତ ରହିଛି ।

ଓଡ଼ିଆ ଭାଷାର ଐତିହାସିକ ବିବର୍ତ୍ତନ ପ୍ରଦର୍ଶନ ପାଇଁ କୋଶଲୀ ଭାଷାର ଭୂମିକା ଅନନ୍ୟ । ଇତିହାସର ଘାତ ପ୍ରତିଘାତ ସହି ଏକ ରକ୍ଷଣଶୀଳ ଭାଷାଭାବରେ ବହୁ ଐତିହାସିକ ତଥ୍ୟ ଏଥିରେ ସଂଗୋପିତ । ଏ ସବୁର ଆବିଷ୍କାର ଓ ଆଲୋଚନା ପ୍ରତ୍ନ ଓଡ଼ିଆର ପୁନର୍ଗଠନ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ।

*(ସପ୍ତର୍ଷି, ଅକ୍ଟୋବର ୧୯୮୬)*

# କୋଶଲୀ ଭାଷାର ନାସ୍ତିକରଣ

ଓଡ଼ିଆ ଭଳି କୋଶଲୀ ଭାଷାର ବିଧିବଦ୍ଧ ଆଲୋଚନା ଏ ପର୍ଯ୍ୟନ୍ତ ହୋଇନାହିଁ । ବିଶେଷତଃ ଏହି ଦୁଇଟି ଭାଷାରେ ବାକ୍ୟ ବିନ୍ୟାସଗତ ଆଲୋଚନାର ଦାରିଦ୍ର୍ୟ ପରିଲକ୍ଷିତ ହୁଏ । ଯେ କୌଣସି ଭାଷାର ବିଶେଷତ୍ୱ ଜାଣିବାକୁ ହେଲେ ସର୍ବପ୍ରଥମେ ଏହାର ବାକ୍ୟାତ୍ମକ ବ୍ୟାଖ୍ୟା ଆରମ୍ଭ ହେବା ଆବଶ୍ୟକ । କାରଣ ଭାଷାର ବାକ୍ୟାତ୍ମକ ସ୍ତରରେ ଅନ୍ୟ ସମସ୍ତ ଭାଷିକ ପ୍ରକ୍ରିୟା ଅନ୍ତଃକ୍ରିୟା କରିଥାଏ । ଓଡ଼ିଆ ଓ କୋଶଲୀ ଭାଷାର ତାତ୍ତ୍ୱିକ ଆଲୋଚନା ବାକ୍ୟାତ୍ମକ ସ୍ତରରେ ଶୃଙ୍ଖଳିତ ଭାବେ ଆରମ୍ଭ ହେଲେ ଏମାନଙ୍କର ସାମାନ୍ୟ ଓ ସ୍ୱତନ୍ତ୍ର ପ୍ରକୃତି ଲୋକ ଲୋଚନକୁ ଆସିବ । ଏହାର ପର ପର୍ଯ୍ୟାୟରେ ଏମାନଙ୍କର ତୁଳନାତ୍ମକ ବିଚାର କରିବାର ପଥ ସୁଗମ ହେବ । ଏହି ତୁଳନାତ୍ମକ ଆଲୋଚନା ବିବାଦହୀନ ଭାବେ ଏମାନଙ୍କର ବୈଶିଷ୍ଟ୍ୟ ପ୍ରତିଷ୍ଠା କରିବାରେ ସହାୟକ ହେବ । ସେଥିପାଇଁ ପ୍ରାରମ୍ଭିକ ସ୍ତରରେ ଓଡ଼ିଆ ଓ କୋଶଲୀର ଆଲୋଚନା ପୃଥକ ଭାବେ ହେବା ଉଚିତ । କାରଣ, ପ୍ରଥମେ ଏ ଦୁଇଟି ଭାଷାର ସ୍ୱତନ୍ତ୍ର ପ୍ରକୃତି ନିର୍ଦ୍ଧାରଣ ନ କଲେ ଏମାନଙ୍କ ମଧ୍ୟରେ ଥିବା ସାଦୃଶ୍ୟ ଓ୍ ପାର୍ଥକ୍ୟ ନିର୍ଣ୍ଣୟ କରିବା ଅସମ୍ଭବ । ଏହାହେଲେ ଭାଷା ଆଲୋଚନା କ୍ଷେତ୍ରରେ ଯେଉଁ ଦାୟିତ୍ୱହୀନ ଅନୁମାନିକ ମନ୍ତବ୍ୟ ପ୍ରକାଶ ପାଇଛି ବା ପାଉଛି ତାର ଅବସାନ ଘଟିବ । ଏତଦ୍‌ବ୍ୟତୀତ ଏହି ବିଶ୍ଳେଷଣ ଭାଷା ସଂପର୍କୀୟ ସପେକ୍ଷ ବା ବିପକ୍ଷ ମତପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ବଳିଷ୍ଠ ତଥ୍ୟ ମଧ୍ୟ ଉପସ୍ଥାପିତ କରିପାରିବ ।

ଏହି ପ୍ରବନ୍ଧରେ କୋଶଲୀ ଭାଷାର ଏକ ନିର୍ଦ୍ଦିଷ୍ଟ ବାକ୍ୟାତ୍ମକ ପ୍ରକ୍ରିୟା ସଂପର୍କରେ ଆଲୋଚନା କରାଯିବ । ବିଧିବଦ୍ଧ ଭାବେ କୌଣସି ତୁଳନାତ୍ମକ ବିଚାର

କରିବା ଏ ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । କେବଳ କୋଶଲୀର ତଥ୍ୟ ସାହାଯ୍ୟରେ ଏହାର ବାକ୍ୟାତ୍ମକ ପ୍ରକ୍ରିୟାଟିର ପ୍ରକୃତି ନିର୍ଣ୍ଣୟ କରିବାକୁ ଚେଷ୍ଟା କରାଯିବ । ଏହି ଦୃଷ୍ଟିରୁ ବିଚାରକଲେ ପ୍ରବନ୍ଧଟିକୁ ଏକ ପ୍ରାରମ୍ଭିକ ପ୍ରଚେଷ୍ଟା ରୂପେ ଗ୍ରହଣ କରାଯିବା ଉଚିତ । ଏହି ଆଲୋଚନା ପରେ, ମାନକ ଓଡ଼ିଆ ସହ ଏହାର ଏକ ତୁଳନାତ୍ମକ ବିଚାର କରାଯାଇପାରେ । ବର୍ତ୍ତମାନ ପାଇଁ ନାସ୍ତିକରଣ ବାକ୍ୟାତ୍ମକ ପ୍ରକ୍ରିୟାଟି ଆମର ଆଲୋଚ୍ୟ ବିଷୟ । କୋଶଲୀ ଭାଷାରେ ନାସ୍ତିକରଣକୁ ପର୍ଯ୍ୟବେକ୍ଷଣାତ୍ମକ ସ୍ତରରେ ଲକ୍ଷ୍ୟକଲେ ଏହାର ଅନେକ ବିଶେଷତ୍ୱ ପୂର୍ବାନୁମାନ କରିହୁଏ । ସେଥିପାଇଁ ଏହି ବାକ୍ୟାତ୍ମକ ପ୍ରକ୍ରିୟାଟି ଆମପାଇଁ ଚିତ୍ତାକର୍ଷକ ଓ ଗୁରୁତ୍ୱପୂର୍ଣ୍ଣ ।

ପ୍ରତ୍ୟେକ ଭାଷାତାତ୍ତ୍ୱିକ ପ୍ରକ୍ରିୟାରେ କୌଣସି ନା କୌଣସି ପ୍ରକାଶ୍ୟ ସୂଚନା ବାକ୍ୟାତ୍ମକ ଗଠନ ମଧ୍ୟରେ ପ୍ରକାଶ ପାଇଥାଏ । ନାସ୍ତିକରଣ ଏହାର ବ୍ୟତିକ୍ରମ ନୁହେଁ । କୋଶଲୀର ନାସ୍ତିକରଣ ଉପାଦାନଟିର ଉପଲବ୍ଧ ରୂପ 'ନାଇଁ' । ଏଇ ଶାବ୍ଦିକ ରୂପଟି ଯେ କୌଣସି ରୂପତାତ୍ତ୍ୱିକ ପରିବେଶ ମଧ୍ୟରେ ଆସିଲେ ମଧ୍ୟ ଏହାର କୌଣସି ଧ୍ୱନିକ ପରିବର୍ତ୍ତନ ହୁଏ ନାହିଁ (୧) ସେଥିପାଇଁ ଏହାକୁ ଆମେ ଏକ ଅପରିବର୍ତ୍ତନୀୟ ରୂପତାତ୍ତ୍ୱିକ ଉପାଦାନରୂପେ ଗ୍ରହଣ କରିପାରିବା । ଏହା ସର୍ବଦା କ୍ରିୟା ବ୍ୟବସ୍ଥାର ଏକ ଅଙ୍ଗରୂପେ ଆତ୍ମପ୍ରକାଶ କରିଥାଏ । କ୍ରିୟା ଯେହେତୁ ବାକ୍ୟର ମୁଖ୍ୟ ଉପାଦାନ ରୂପେ ଗୃହିତ ହୁଏ ଏହି ଉପାଦାନଟି ସେଇଥିପାଇଁ ପ୍ରାମାଣିକ ଭାବେ ବାକ୍ୟାତ୍ମକ । ଅର୍ଥାତ "ନାଇଁ" ବାକ୍ୟାତ୍ମକ ନାସ୍ତିକରଣର ଏକ ଶାବ୍ଦିକ ସଂକେତ । ଏ ସଂପର୍କରେ ବିଶେଷ ଆଲୋଚନା କରିବା ପୂର୍ବରୁ ଏହି ଉପାଦାନଟିର ରୂପତାତ୍ତ୍ୱିକ ପ୍ରକୃତି ପ୍ରଥମେ ବିଚାର କରିବା ଆବଶ୍ୟକ । ଏଥିପାଇଁ ତଳଲିଖିତ ତଥ୍ୟ ଆଲୋଚନା ଅନ୍ତର୍ଭୁକ୍ତ କରାଯାଇ ପାରେ ।

୧) କ) ମୁଇଁ ନାଇଁ ଯାଏଁ ।

ଖ) ହେ ନାଇଁ ଶୁଏ ।

୧ ର (କ) ଓ (ଖ) ରେ "ନାଇଁ କ୍ରିୟା (ଯଥାକ୍ରମେ "ଯାଏଁ" ଓ "ଶୁଏ") ଓ କର୍ତ୍ତା (ଯଥାକ୍ରମେ "ମୁଇଁ" ଓ "ହେ") ମଧ୍ୟରେ ଆସିଛି । ଆମେ ପୂର୍ବରୁ କହିଛୁଁ ଯେ ଏହି

ଉପାଦାନଟି କ୍ରିୟାର ଏକ ଅଂଶରୂପେ ଆତ୍ମପ୍ରକାଶ କରେ କିନ୍ତୁ ଏହାକୁ ଆମେ ପ୍ରମାଣ ସିଦ୍ଧ କରିନାହୁଁ । ୧ର ବାକ୍ୟ ଦୁଇଟିରେ ଏହାର ଗଠନିକ ସ୍ଥାନଟ କ୍ରିୟା ଓ କର୍ତ୍ତାର ମଧ୍ୟରେ ଥିବାରୁ ଏହା ବାସ୍ତବରେ କାହାସହ ଆସୁଛି ଜାଣିବା ଏକ ସମସ୍ୟା । ତେଣୁ ବର୍ତ୍ତମାନ ଆମେ କର୍ତ୍ତାର ସ୍ଥାନ ପରିବର୍ତ୍ତନ କରି ୨ରେ ସେ ବାକ୍ୟ ଦୁଇଟିକୁ ପୁନର୍ବାର ବିଚାର କରିବା ।

୨) କ) ନାଇଁ ଯାଏଁ ମୁଇଁ ।

ଖ) ନାଇଁ ଶୁଏ ହେ ।

୧ର (କ) ଓ (ଖ) କର୍ତ୍ତା ବାକ୍ୟର ଶେଷ ସ୍ଥାନରେ ଆସିଛି । ଯଦି "ନାଇଁ କର୍ତ୍ତା ସହ ଆସୁଥାନ୍ତା ତେବେ ଏହା ମଧ୍ୟ କର୍ତ୍ତାସହ ବାକ୍ୟର ଶେଷ ସ୍ଥାନକୁ ଚଳିତ ହୋଇଥାନ୍ତା । ସେଥିପାଇଁ ଆମକୁ ଗ୍ରହଣ କରିବାକୁ ହେବ ଯେ ନାଇଁ ପ୍ରକୃତରେ କ୍ରିୟା ସହ ଆସେ । କ୍ରିୟା ଗଠନରେ ଏହର ଆଗମନଗତ ପ୍ରକୃତି ଜାଣିବା ପାଇଁ ବର୍ତ୍ତମାନ ନିମ୍ନର ଅଭିବ୍ୟକ୍ତି ଗୁଡ଼ିକୁ ଲକ୍ଷ୍ୟ କରାଯାଉ ।

୩) କ) ସେ ଇହାଦେ ଘରେ ଅଛେ ।

ଖ) ସେ ଇହାଦେ ଘରେ ନାଇଁ ଅଛେ । *

ଗ) ସେଇହାଦେ ଘରେ ନାଇଁ । *

ଘ) ସେ ଇହାଦେ ଘରେ ନାଇଁନ ।

୩ର (କ) ଗଠନଟି ଏକ ଅସ୍ତିତ୍ୱ ବାଚୀ ବାକ୍ୟ । ଏହାର କ୍ରିୟା "ଅଛେ" । (ଖ) ଗଠନରେ (କ) ବାକ୍ୟକୁ ନାସ୍ତିକରଣ କରିବାକୁ ଚେଷ୍ଟା କରାଯାଇଛି । କିନ୍ତୁ ବାକ୍ୟଟି ଅବୈଧ ହୋଇଛି । (ଗ) ରେ କ୍ରିୟା ବ୍ୟତୀତ କେବଳ "ନାଇଁ" ଆସିଛି । ଏ ବାକ୍ୟଟି ମଧ୍ୟ ଅଗ୍ରହଣୀୟ । (ଘ)ର ବାକ୍ୟଟି ସିଦ୍ଧ । ଏହି ବାକ୍ୟଟିକୁ ଲକ୍ଷ୍ୟ କଲେ ଜଣାପଡ଼େ ଯେ ଏଥିରେ "ନାଇଁ" ସହ "ନ" ଆସିଛି । କ୍ରିୟା ଅଛେ ସହ "ନ"ର କୌଣସି ସଂପର୍କ ନାହିଁ । ଏହା ସଂପୂର୍ଣ୍ଣଭାବେ ଏକ ପୃଥକ ଉପାଦାନ । ଏଥିରୁ ଏହା ସ୍ପଷ୍ଟ ଯେ "ନାଇଁ"ର ସ୍ୱାଧୀନ ସ୍ଥିତି ନାହିଁ । ଏହା ସର୍ବଦା ଅନ୍ୟ ଏକ ଉପାଦାନର ଅଧିନସ୍ଥ ହୋଇ ଆତ୍ମପ୍ରକାଶ କରେ । ଅର୍ଥାତ, "ନାଇଁ" ଏକ ମୁକ୍ତ ରୂପ (Free

Form) ନୁହେଁ, ଏହା ଏକ ବଦ୍ଧରୂପ ବା (Bound Form)। ଏହି ଧାରଣାଟି ପ୍ରମାଣସିଦ୍ଧ ହେବ ଆମେ ଯଦି "ନ"ର ଅର୍ଥଗତ ପ୍ରକୃତିକୁ ବିଚାର କରିବା। "ନ" "ଅଛେ" କ୍ରିୟା ଭଳି ଅସ୍ତିତ୍ୱବାଚୀ ଅର୍ଥ ପ୍ରକାଶ କରେ ନାହିଁ। ତେଣୁ ଆମେ ପୂର୍ବରୁ ସୂଚନା ଦେଇଛେଁ ଯେ "ଅଛେ" ସହ ଏହାର କିଛି ସଂପର୍କ ନାହିଁ। ତେବେ ଏହାର ଅର୍ଥ କଣ ? / ବାକ୍ୟର ଅର୍ଥକ୍ଷେତ୍ରରେ ଏହାର କୌଣସି ପ୍ରଭାବ ଥିଲାଭଳି ମନେ ହୁଏ ନାହିଁ। ତେଣୁ ଏହାକୁ ଏକ ବ୍ୟର୍ଥପଦ ରୂପେ ଗ୍ରହଣ କରାଯାଇ ପାରେ । ଏହି ଅର୍ଥହୀନ ପଦଟି ତେବେ କ୍ରିୟାସ୍ଥାନରେ ଆସିବାର କାରଣ କଣ ? ନାଇଁକୁ ଯଦି ଏକ ବଦ୍ଧରୂପ ରୂପେ ବ୍ୟାଖ୍ୟା କରାଯାଏ, ଏହାର କାରଣ ସାବ୍ୟସ୍ତ କରିବାରେ କୌଣସି ସମସ୍ୟା ଉପୁଜିବ ନାହିଁ । ଏକ ବଦ୍ଧ ରୂପ ହେତୁ ଏହା ଅନ୍ୟଏକ ଉପାଦାନର ସାହାଯ୍ୟ ବ୍ୟତୀତ ନିଜର ସ୍ଥିତି ସାବ୍ୟସ୍ତ କରିପାରେନାହିଁ। ସେଥିପାଇଁ ମୁଖ୍ୟ କ୍ରିୟା ରୂପେ ଆସିଥିବା ଏକ ସାହାଯ୍ୟକାରୀ କ୍ରିୟା (ଅଛେ)କୁ ନାସ୍ତିକୃତ କରିବା ପାଇଁ "ନାଇଁ" ଏକ ବ୍ୟର୍ଥ ପଦର ସାହାଯ୍ୟ ନିଏ । "ନ" ଏହି ଆବଶ୍ୟକତା ପୂରଣ କରିଥାଏ । (୨) ତେଣୁ ଆମକୁ ଗ୍ରହଣ କରିବାକୁ ହେବ ଯେ "ନାଇଁ" ସ୍ୱାଧୀନ ଭାବେ ଆସିଥିବା ଏକ ପଦ ନୁହେଁ। ଏହା ଏକ ବଦ୍ଧ ରୂପତାତ୍ତ୍ୱିକ ଉପାଦାନ ।

ପ୍ରତ୍ୟେକ ବାକ୍ୟାତ୍ମକ ଉପାଦାନର ଏକ ମୌଳିକ ଗାଠନିକ ଅବସ୍ଥିତି ଥାଏ। ଏକ ବାକ୍ୟାତ୍ମକ ଉପାଦାନ ହେତୁ "ନାଇଁ" ମଧ୍ୟ ଏକ ନିର୍ଦ୍ଦିଷ୍ଟ ଗାଠନିକ ସ୍ଥାନ ଅଧିକାର କରୁଥିବ ବୋଲି ଅନୁମାନ କରାଯାଇପାରେ। ଆମେ ଜଣାଇଛୁଁ ଯେ ଏହାର ସ୍ଥାନ କ୍ରିୟା ଗଠନ ମଧ୍ୟରେ ନିରୂପିତ ହୋଇଥାଏ। କିନ୍ତୁ ସେହି ସ୍ଥାନଟି ଆମେ ନିର୍ଦ୍ଦିଷ୍ଟ ଭାବେ ଦର୍ଶାଇ ନାହୁଁ। ଏହା କରିବାକୁ ହେଲେ ପ୍ରଥମେ ଆମକୁ କୋଶଲୀର କ୍ରିୟା ବ୍ୟବସ୍ଥାରେ ବିଭିନ୍ନ ଉପାଦାନର ରୂପାବଳୀ ନିର୍ଣ୍ଣୟ କରିବାକୁ ହେବ । ଏହା ଏକ ଦୀର୍ଘ ଆଲୋଚନା ବିଷୟ । ଏଠାରେ ସଂକ୍ଷେପରେ କେବଳ ଉପାଦେୟ ତଥ୍ୟ ଉପସ୍ଥାପିତ କଲେ ଆମର ଉଦ୍ଦେଶ୍ୟ ପୂରଣ ହେବ ।

(୪) ରେ ଦର୍ଶାଇ ଦିଆଯାଇଥିବା ବାକ୍ୟଟିକୁ ବିଗ୍ରହ କରାଯାଉ :

କ) ମୁଇଁ ପାଠ୍ ପଢ଼ିଲିଁ ।

ଖ) ତୁଇ ପାଠ୍ ପଢ଼ଲୁ ।

ଗ) ହେ ପାଠ୍ ପଢ଼ଲା ।

(୪)ର ସମସ୍ତ ବାକ୍ୟ ସମାନ କାଳ ପ୍ରକାଶକ । ଏମାନଙ୍କର କ୍ରିୟାରୂପରେ ପାର୍ଥକ୍ୟ ଦେଖାଯାଏ । ଯତ୍ନର ସହ ଲକ୍ଷ୍ୟକଲେ ଜଣାପଡ଼େ ଯେ ଏହି ପାର୍ଥକ୍ୟ ବାକ୍ୟ ଗୁଡ଼ିକରକର୍ତ୍ତାର ପୁରୁଷ + ବଚନ ପରିବର୍ତ୍ତନ ଯୋଗୁଁ ଘଟିଛି । କ୍ରିୟାର ଏହି ପରିବର୍ତ୍ତନ ଏମାନଙ୍କର ଶେଷ ସ୍ଥାନରେ ପରିଦୃଷ୍ଟ ହୁଏ । ସେଥିପାଇଁ ଏହି ଶେଷ ଉପାଦନାଗୁଡ଼ିକୁ ଆମେ ପୁରୁଷ + ବଚନ ପ୍ରତ୍ୟୟ କହିପାରିବା । କ୍ରିୟାର ପ୍ରଥମ ଉପାଦାନ ଧାତୁ ଏବଂ ପୁରୁଷ + ବଚନ ପ୍ରତ୍ୟୟ ମଧ୍ୟରେ ଆସିଥିବା "ଇଲ୍" । ଇଲ୍ ଉପାଦାନଟି ଅତୀତକାଳ ପ୍ରତ୍ୟୟରୂପେ ଗ୍ରହଣ କରାଯିବ । ଏଗୁଡ଼ିକୁ (୫)ର ପ୍ରତିନିଧାନ ମାଧ୍ୟମରେ ଶୃଙ୍ଖଳିତ ଭାବେ ଦର୍ଶାଇ ଦିଆଯାଇଛି ।

| (୫) | ଧାତୁ + | କାଳପ୍ରତ୍ୟୟ + | (ପୁରୁଷ+ବଚନ) ପ୍ରତ୍ୟୟ |
|---|---|---|---|
| କ) | ପଢ଼୍ | ଇଲ୍ | ଇଁ |
| ଖ) | ପଢ଼୍ | ଇଲ୍ | ଉ |
| ଗ) | ପଢ଼୍ | ଇଲ୍ | ଆ |

(୫)ର ତିନୋଟି ରୂପାବଳୀ ସାହାଯ୍ୟରେ (୪)ର କ୍ରିୟା ଗୁଡ଼ିକର ଉପାଦାନ ଗୁଡ଼ିକୁ କ୍ରମାନ୍ୱୟରେ ଦର୍ଶାଇ ଦିଆଯାଇଛି । ଏହା କ୍ରିୟା ଉପାଦାନ ନିର୍ଣ୍ଣୟ ପ୍ରଣାଳୀର ଏକ ଦୃଷ୍ଟାନ୍ତ ମାତ୍ର । ବିଶ୍ଳେଷଣର ଏହି କୌଶଳ ପ୍ରୟୋଗକରି ଅନ୍ୟ ସମସ୍ତ କ୍ରିୟା ଉପାଦାନର ରୂପାବଳୀ ନିର୍ଣ୍ଣୟ କରାଯାଇ ପାରେ । ଆଉ ବିଶେଷ ଆଲୋଚନା ନ କରି ଆମେ କୋଶଲୀରେ ସର୍ବାଧିକ ଉପାଦାନ ଥିବା କ୍ରିୟାପଦର ସମସ୍ତ ରୂପାବଳୀର ପ୍ରତିନିଧାନଟିକୁ ଦର୍ଶାଇଦେବା ଉଚିତ ହେବ ।

(୬)ର ପ୍ରତିନିଧାନଟି ଏହି ରୂପାବଳୀଗୁଡ଼ିକୁ ପ୍ରତିନିଧିତ୍ୱ କରୁଛି ।

୬- ଧାତୁ + ପ୍ରେରଣାର୍ଥକ ପ୍ରତ୍ୟୟ + ପକ୍ଷ୍ୟ + ସାହାଯ୍ୟକାରୀ କ୍ରିୟା + କାଳ + (ପୁରୁଷ+ବଚନ) ଏହି ରୂପାବଳୀ ଗୁଡ଼ିକର ପ୍ରକାଶ୍ୟରୂପ ଏକ କ୍ରିୟାପଦ ସାହାଯ୍ୟରେ ଦର୍ଶାଇଦେଲେ (୬)ର ପ୍ରତିନିଧାନଟିକୁ ଗ୍ରହଣ କରିବାରେ କିଛି ଆପତ୍ତି ଉଠି ନପାରେ । "ପଢ଼ାଉଥିଲେ" କ୍ରିୟାକୁ ଏକ ଉଦାହରଣ ରୂପେ ନିଆଯାଇ (୭)ରେ ଏହର ଉପାଦାନ ଗୁଡ଼ିକୁ ଉପସ୍ଥାପିତ କରାଯାଇଛି ।

(୭) ଧାତୁ + ପ୍ରେରଣାର୍ଥକ + ପକ୍ଷ୍ୟ + ସାହାଯ୍ୟକାରୀ କ୍ରିୟା + କାଳ + (ପୁରୁଷ+ବଚନ)

ପଢ଼୍ ଆ ଉ ଥ ଇଲ୍ ଏ

ବର୍ତ୍ତମାନ (୬)ର ରୂପାବଳୀ ଗୁଡ଼ିକର ଗାଠନିକ ପ୍ରକୃତି ସଂପର୍କରେ କିଛି ସୂଚନା ଦେଲେ ଆଲୋଚନା ସହଜ ସାଧ୍ୟ ହେବ । (୬)ରେ ରୂପାବଳୀ ଗୁଡ଼ିକ ଯେଉଁ କ୍ରମରେ ଦର୍ଶାଇ ଦିଆଯାଇଛି ତାହା ଅପରିବର୍ତ୍ତନୀୟ । ଏହି ପ୍ରତିନିଧାନଟି ବାସ୍ତବରେ ଦୁଇଟି ରୂପତାତ୍ତ୍ୱିକ ଏକକ ଦ୍ୱାରା ଗଠିତ । ପ୍ରଥମ ଏକକଟି ଧାତୁ, ପ୍ରେରଣାର୍ଥକ ପ୍ରତ୍ୟୟ ଓ ପକ୍ଷ୍ୟ ପ୍ରତ୍ୟୟକୁ ନେଇ ଗଠିତ । ଦ୍ୱିତୀୟ ଏକକଟି ସାହାଯ୍ୟକାରୀ କ୍ରିୟା, କାଳ ଓ ପୁରୁଷ+ବଚନ ପ୍ରତ୍ୟୟକୁ ନେଇ ଗଠିତ (୭) । କ୍ରିୟାରେ ଯଦି ପକ୍ଷ୍ୟ ପ୍ରତ୍ୟୟର ପ୍ରକାଶ୍ୟ ରୂପ ଅନୁପସ୍ଥିତ ଥାଏ ତେବେ କାଳ ଓ ପୁରୁଷ + ବଚନ ପ୍ରତ୍ୟୟ ଧାତୁ ସହ ସଂଯୁକ୍ତ ହୁଏ । ଯଦି ପକ୍ଷ୍ୟ ପ୍ରତ୍ୟୟ ଉପସ୍ଥିତ ଥାଏ ତେବେ ଦ୍ୱିତୀୟ ରୂପ ତାତ୍ତ୍ୱିକ ଏକକଟି ବିସ୍ତାରିତ ହୁଏ ଏବଂ କାଳ ଓ ପୁରୁଷ + ବଚନ ପ୍ରତ୍ୟୟ ଏକ ଉପଯୁକ୍ତ ସାହାଯ୍ୟକାରୀ କ୍ରିୟାସହ ସଂଯୁକ୍ତ ହୋଇ ପକ୍ଷ୍ୟ ପ୍ରତ୍ୟୟ ପରେ ଆସେ । ଏହା ଉଦାହରଣ ସାହାଯ୍ୟରେ ନିମ୍ନରେ ଦର୍ଶାଇ ଦିଆଯାଇଛି । ଏଥିପାଇଁ ଆମେ "ପଢ଼ିଲିଁ" ଓ "ପଢ଼ିଥିଲା" କ୍ରିୟାପଦ ଦୁଇଟିର ସାହାଯ୍ୟ ନେଇଛେଁ ।

(୮) କ) ଧାତୁ + କାଳ + (ପୁରୁଷ+ବଚନ)

ପଢ଼୍ ଇଲ୍ ଇଁ

ଖ) ଧାତୁ + ପକ୍ଷ୍ୟ + ସାହାଯ୍ୟ +କାଳ + (ପୁରୁଷ+ବଚନ)

ପଢ଼୍ ଇ ଥ ଇଲ୍ ଆ

(୮)ରୁ ଏହା ସ୍ପଷ୍ଟ ଯେ ସାହାଯ୍ୟକାରୀ କ୍ରିୟା ଆସିବାପାଇଁ ପକ୍ଷ୍ୟ ପ୍ରତ୍ୟୟର ପ୍ରକାଶ୍ୟ ଉପସ୍ଥିତି ନିହାତି ଜରୁରୀ । ତେଣୁ ଏହା ଏକ ରୂପତାତ୍ତ୍ୱିକ ଆବଶ୍ୟକତା ପୂରଣ କରିବାକୁ ଆତ୍ମପ୍ରକାଶ କରେ ବୋଲି ଆମକୁ ଗ୍ରହଣ କରିବାକୁ ହେବ । ଏହା ହେଲା – ଧାତୁ ସହ ପକ୍ଷ୍ୟ ସଂଯୁକ୍ତ ହେଲେ ଅନ୍ୟ କୌଣସି କ୍ରିୟା ଉପାଦାନ ଏହାସହ ସଂଯୁକ୍ତ ହୋଇପାରେନା । ସେଥିପାଇଁ ପକ୍ଷ୍ୟ ବ୍ୟତୀତ ଅନ୍ୟ ସମସ୍ତ ଉପାଦାନ ସଂଯୁକ୍ତ ହେବାପାଇଁ ଏକ ଅର୍ଥହୀନ କ୍ରିୟାର ଆବଶ୍ୟକତା ପଡ଼େ ଏବଂ ସାହାଯ୍ୟକାରୀ କ୍ରିୟା ଏହି ଆବଶ୍ୟକତା ପୂରଣ କରେ ।

ଉପର ଆଲୋଚିତ ତଥ୍ୟର ଭିତ୍ତିଭୂମି ଉପରେ ବର୍ତ୍ତମାନ "ନାଇଁ"ର ଗାଠନିକ ସ୍ଥାନ ନିରୁପଣ କରିବା ଆବଶ୍ୟକ । "ନାଇଁ" ବ୍ୟବହୃତ (୯)ର ବାକ୍ୟଗୁଡ଼ିକୁ ସେଥିପାଇଁ ବିଚାର କରାଯାଉ ।

(୯) କ) ମୁଇଁ ଭାତ୍ ଖାଏଁମି ।
ଖ) ମୁଇଁ ଭାତ୍ ଖାଏଁମି ନାଇଁ । *
ଗ) ମୁଇଁ ଭାତ୍ ନାଇଁ ଖାଏଁ ।
ଘ) ତୁଇ ଭାତ୍ ଖାଉଥିଲୁ ।
ଙ) ତୁଇ ଭାତ୍ ଖାଉନାଇଁ । *
ଚ) ତୁଇ ଭାତ୍ ଖାଉଥିଲୁ ନାଇଁ । *
ଛ) ତୁଇ ଭାତ୍ ନାଇଁ ଖାଉଥାଇ ।

(୯)ରେ (କ)ର ସାମାନ୍ୟ ବର୍ତ୍ତମାନ କାଳର କ୍ରିୟା "ଖାଏଁମି" ବ୍ୟବହୃତ ହୋଇଛି ଏବଂ (ଘ)ରେ ପ୍ରବାହୀ ଅତୀତ କ୍ରିୟାରୂପ "ଖାଉଥିଲୁ" ଆସିଛି । ଏହି ଦୁଇକ୍ରିୟାକୁ ଯଥାକ୍ରମେ (ଖ) (ଗ) ଓ (ଙ) (ଚ) (ଛ)ରେ ନାସ୍ତିକରଣ କରିବାକୁ ଚେଷ୍ଟା କରାଯାଇଛି । ଏହି ବାକ୍ୟାତ୍ମକ ପ୍ରକ୍ରିୟାର କେବଳ ଦୁଇଟି ଗଠନ ଗ୍ରହଣୀୟ ହୋଇଛି । ଏହା ଯଥାକ୍ରମେ (ଗ) ଓ (ଛ) । (୯)ର ନାସ୍ତିକୃତ କ୍ରିୟାଗୁଡ଼ିକୁ ଲକ୍ଷ୍ୟକଲେ ଜଣାପଡ଼େ ଯେ (ଖ) ଓ (ଚ)ରେ "ନାଇଁ" କ୍ରିୟାର ଠିକ୍ ପରବର୍ତ୍ତୀ ସ୍ଥାନରେ ଆସିଛି ଏବଂ (ଙ)ରେ ଏହା ସାହାଯ୍ୟକାରୀ କ୍ରିୟା ଓ ଏହାସହ ସଂଯୁକ୍ତ ଉପାଦାନଗୁଡ଼ିକୁ

(=ଥିଲୁ) ପ୍ରତିସ୍ଥାପନ କରିଛି । "ନାଇଁ"ର ଏ ସମସ୍ତ ଗାଠନିକ ଅବସ୍ଥିତି ବାକ୍ୟଗୁଡ଼ିକୁ ଅବୈଧ କରିବାରେ ସାହାଯ୍ୟ କରିଛି । କେବଳ (ଗ) ଓ (ଛ)ରେ "ନାଇଁ" ଉପଯୁକ୍ତ ଗାଠନିକ ସ୍ଥାନ ଅଧିକାର କରିଥିବା ଭଳି ମନେହୁଏ । କାରଣ ଏହି ବାକ୍ୟ ଦୁଇଟି ସିଦ୍ଧ । ଏଥିରେ "ନାଇଁ" କ୍ରିୟାର ପୂର୍ବସ୍ଥାନରେ ଆସିଛି । ସେଥିପାଇଁ ଆମକୁ ଗ୍ରହଣ କରିବାକୁ ହେବ ଯେ "ନାଇଁ"ର ଉପଯୁକ୍ତ ଗାଠନିକ ସ୍ଥାନହେଲା - କ୍ରିୟାର ପୂର୍ବସ୍ଥାନ । ଆମେ ପୂର୍ବରୁ କହିଛେଁ ଯେ ନାଇଁ ଏକ ବଦ୍ଧରୂପ । ସେଥିପାଇଁ ଏହା ଏକ ପ୍ରତ୍ୟୟର ପ୍ରକୃତି ପ୍ରତିଫଳିତ କରେ । ଏହାର ଗାଠନିକ ସ୍ଥାନରୁ ସୂଚନା ମିଳୁଛି ଯେ ଏହା ଏକ ପୂର୍ବପ୍ରତ୍ୟୟ ରୂପେ ଆତ୍ମପ୍ରକାଶ କରେ ।

କ୍ରିୟା ରୂପାବଳୀ ଆଲୋଚନା ସମୟରେ ଆମେ ସଂକେତ ଦେଇଛେଁ ଯେ ଏକ ସର୍ବାଧିକ ଉପାଦାନ ଧାରୀ କ୍ରିୟାପଦ ଦୁଇଟି ଏକକର ସମାହାର । ଯଦି "ନାଇଁ" ଏକ ପୂର୍ବ ପ୍ରତ୍ୟୟ ହୁଏ, ତେବେ ଏହା କ୍ରିୟାର ଏହି ଦୁଇଟି ଏକକ ପୂର୍ବରୁ ଆସିପାରେ । ଏ ପର୍ଯ୍ୟନ୍ତ ଆମେ ଏହାକୁ କେବଳ ଧାତୁର ପୂର୍ବସ୍ଥାନରେ ଅବସ୍ଥାପନ କରାଇଛେଁ ଏବଂ ଗଠନଗୁଡ଼ିକ ବୈଧ ହୋଇଛି । ବର୍ତ୍ତମାନ କ୍ରିୟାର ଦ୍ୱିତୀୟ ଏକକ (ସାହାଯ୍ୟକାରୀ କ୍ରିୟା ଓ ଏହାର ସଂଯୁକ୍ତ ଉପାଦାନ)ର ପୂର୍ବସ୍ଥାନରେ ଏହାକୁ ଅବସ୍ଥାପିତ କରି ଗଠନ ଗୁଡ଼ିକୁ ବିଚାର କରାଯାଉ ।

(୧୦) କ) ହରି କଟକ୍ ଯାଇ ନାଇଁ ଥାଇ ।

ଖ) ପିଲାମାନେ ପାଠ୍ ପଢୁ ନାଇଁ ଥାଇ ।

(୧୦)ରେ ଆସିଥିବା ଉଭୟ ବାକ୍ୟ ଗ୍ରହଣଯୋଗ୍ୟ ଅତଏବ "ନାଇଁ"କୁ ନେଇ ଆମର ପୂର୍ବ ଅନୁମାନ ପ୍ରମାଣସିଦ୍ଧ ହୋଇଛି । ବିନା ଦ୍ୱିଧାରେ କୁହାଯାଇପାରେ "ନାଇଁ" ଏକ ପୂର୍ବପ୍ରତ୍ୟୟ ଏବଂ ଉଭୟ ଏକକ ପୂର୍ବରେ ଏହାର ଅବସ୍ଥିତି ଗ୍ରହଣଯୋଗ୍ୟ ।

ପୂର୍ବ ଅଧ୍ୟାୟରେ ଆମେ "ନାଇଁ"ର ରୂପତାତ୍ତ୍ୱିକ ପ୍ରକୃତି ଓ କ୍ରିୟା ବ୍ୟବସ୍ଥାରେ ଏହାର ଗାଠନିକ ସ୍ଥାନ ନିରୂପଣ କରିଛୁଁ । ଏହାବ୍ୟତୀତ ଏହି ଉପାଦାନର ଉପସ୍ଥିତି କ୍ରିୟା ବ୍ୟବସ୍ଥାରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଆଣେ । ଅର୍ଥାତ୍, ଏହାର ପ୍ରଭାବରେ

ଅନ୍ୟାନ୍ୟ କ୍ରିୟା ଉପାଦାନ ସଂକ୍ରମିତ ହୁଅନ୍ତି । ତେଣୁ "ନାଇଁ"ର ସଂଯୋଜନାରେ ଏହାର ପ୍ରଭାବୀ ପଦ (ଯେଉଁ କ୍ରିୟାପଦ ସହ ଏହା ସଂଯୁକ୍ତ ହୁଏ)ର ରୂପତାତ୍ତ୍ୱିକ ପରିବେଶ ମଧ୍ୟରେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ଏହା "ନାଇଁ"ର ଏକ ବିଶେଷ ସ୍ୱଭାବ ରୂପେ ଗ୍ରହଣ କରାଯାଇପାରେ । ଏହି ପରିବର୍ତ୍ତନର ଏକ ଉଦାହରଣ ୧୧ରେ ଲକ୍ଷ୍ୟ କରାଯାଉ ।

(୧୧) କ) ଆମେ କାମ୍ କରସୁଁ ।

ଖ) ଆମେ କାମ୍ ନାଇଁକରୁଁ ।

(୧୧) (କ)ର ଅସ୍ତିବାଚକ କ୍ରିୟାରୂପ କରସୁଁ । (ଖ)ରେ ଏହାକୁ ନାସ୍ତିକରଣ କରାଯାଇଛି । ଏହାଫଳରେ ଏହି କ୍ରିୟାର ମୂଳରୂପରେ ପରିବର୍ତ୍ତନ ଘଟିଛି । ନିର୍ଦ୍ଦିଷ୍ଟଭାବେ କହିବାକୁ ଗଲେ ଏହାର "ସ" ରୂପତାତ୍ତ୍ୱିକ ଉପାଦାନଟି ବିଲୁପ୍ତ ହୋଇଛି । ଏହା ବାସ୍ତବରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପରିବର୍ତ୍ତନ । (କାରଣ ମଣିଷ ଭାଷାର କୌଣସି ଅର୍ଥସୂଚକ ଉପାଦାନ ଯାଦୃଚ୍ଛିକ ଭାବେ ବିଲୁପ୍ତ ହୁଏନି) । ୧୧ରେ ଯେଉଁ ଉପାଦନର ବିଲୁପ୍ତି ଘଟିଛି ତାହାଯଦି ଏକ ନିର୍ଦ୍ଦିଷ୍ଟ ଅର୍ଥସୂଚକ ଉପାଦାନ ହୋଇଥାଏ, ତେବେ ଏହି ବିଲୁପ୍ତି ପ୍ରକ୍ରିୟାଟି ନିଶ୍ଚୟ ଏକ ନିର୍ଦ୍ଦିଷ୍ଟ ନିୟମ ଦ୍ୱାରା ନିୟନ୍ତ୍ରିତ ହୋଇଥିବ । ବିଲୁପ୍ତି ନିୟମ ସର୍ବଦା ଏକ ଭାଷାତାତ୍ତ୍ୱିକ ସଂରୋଧ (Linguistic Constraint) ଦ୍ୱାରା ପରିଚାଳିତ ହୋଇଥାଏ । ତାହାହେଲା - ପୁନରୁଦ୍ଧାର ତତ୍ତ୍ୱ । ଅର୍ଥାତ, ଯଦି କୌଣସି ଗଠନରେ ଆସିଥିବା ଏକ ଉପାଦାନର ସମସ୍ତ ଅର୍ଥଗତ ଲକ୍ଷଣ ସେହି ଗଠନର ଅନ୍ୟ କେଉଁଠାରୁ ପୁନରୁଦ୍ଧାର କରାଯାଇ ନପାରେ, ତେବେ ସେ ଉପାଦାନଟି କୌଣସି ଉପାୟରେ ବିଲୁପ୍ତ ହୋଇ ପାରେନା । ସେଥିପାଇଁ "ନାଇଁ"ର ସହସ୍ଥାପନା ଦ୍ୱାରା କ୍ରିୟାରେ ବିଲୁପ୍ତ ହେଉଥିବା ଉପାଦାନ ଗୁଡ଼ିକ ଅର୍ଥସୂଚକ କି ନୁହେଁ ତାହା ଆମକୁ ପ୍ରଥମେ ନିର୍ଦ୍ଧାରଣ କରିବାକୁ ହେବ । ଏଗୁଡ଼ିକ ଯଦି ଅର୍ଥସୂଚକ ହୋଇଥାନ୍ତି ଏମାନଙ୍କର ଅର୍ଥଗତ ବିଲକ୍ଷଣ କିପରି ପୁନରୁଦ୍ଧାର କରାଯିବ ତାହା ବ୍ୟାଖ୍ୟା କରିବାକୁ ହେବ । ସେଥିପାଇଁ ପ୍ରଥମେ କ୍ରିୟାର କେଉଁ ଉପାଦାନ ଗୁଡ଼ିକ "ନାଇଁ"ର ଆଗମଦ୍ୱାରା ଲୁପ୍ତ ହୁଅନ୍ତି ତାହା ନିର୍ଣ୍ଣୟ କରିବାକୁ ହେବ । ଏଥିପାଇଁ ସମସ୍ତ ସାମ୍ଭାବ୍ୟ ନାସ୍ତିକୃତ

କ୍ରିୟାରୂପକୁ ଆଲୋଚନା କରିବା ଆବଶ୍ୟକ । ଆମେ ଏଠାରେ ମୁଖ୍ୟ କ୍ରିୟାରୂପ ଗୁଡ଼ିକ (ଅର୍ଥାତ୍, ସମସ୍ତ ପକ୍ଷ୍ୟସହ ତିନୋଟି କାଳର ବିଭିନ୍ନ ପୁରୁଷ+ବଚନ ରୂପ) ଆଲୋଚନା କରିବା ଏବଂ ଏହା ମଧ୍ୟରେ ଲୁପ୍ତ ହେଉଥିବା ଉପାଦାନ ଗୁଡ଼ିକର ଅର୍ଥଗତ ଲକ୍ଷଣ କିପରି ପୁନରୁଦ୍ଧାର ହେଉଛି ତାହା ଦର୍ଶାଇବା ।

ନାଇଁର ଉପସ୍ଥିତିରେ ବିଲୁପ୍ତ ହେଉଥିବା କ୍ରିୟା ଉପାଦାନ ଗୁଡ଼ିକୁ ନିର୍ଦ୍ଧାରଣ କରିବା ପାଇଁ (୧୨)ର ବାକ୍ୟଗୁଡ଼ିକୁ ବିଚାର କରାଯାଉ :

(୧୨) କ) ସେ ଗୀତା ପଢୁଥିଲା ।

ଖ) ସେ ଗୀତା ନାଇଁ ପଢୁଥାଇ ।

ଗ) ସେମାନେ ଗୀତା ପଢ଼ିଥିଲେ ।

ଘ) ସେମାନେ ଗୀତା ନାଇଁ ପଢ଼ିଥାଇ ।

(୧୨)ରେ (କ) ଓ (ଗ) ବାକ୍ୟ ଦୁଇଟି ଅସ୍ତି ବାଚକ । ଏମାନଙ୍କର କ୍ରିୟା ଗୁଡ଼ିକ ଯଥାକ୍ରମେ "ଖ" ଓ "ଘ"ରେ ନାସ୍ତିବାଚକ ଉପାଦାନ "ନାଇଁ" ସହ ଆସି ସେମାନଙ୍କର କେତେକ ଉପାଦାନ ହରାଇଛନ୍ତି । ପ୍ରଥମେ ଏହି ଅସ୍ତିବାଚକ କ୍ରିୟା ଦୁଇଟିର ରୂପତାତ୍ତ୍ୱିକ ଉପାଦାନ ଗୁଡ଼ିକୁ ଚିହ୍ନଟ କରାଯାଉ । ଏହା (୧୩)ରେ ଦର୍ଶାଇ ଦିଆଯାଇଛି ।

| (୧୩) | ଧାତୁ+ | ପକ୍ଷ୍ୟ+ | ସାହାଯ୍ୟକାରୀ+ | କାଳ + | ପୁରୁଷ |
|---|---|---|---|---|---|
| କ) ପଢୁଥିଲା | ପଢ୍ | ଉ | ଥ | ଇଲ୍ | ଆ |
| ଖ) ପଢ଼ିଥିଲେ | ପଢ୍ | ଇ | ଥ | ଇଲ୍ | ଏ |

ଏହି କ୍ରିୟା ଦୁଇଟିର ନାସ୍ତିବାଚକ ରୂପ (୧୪)ରେ ଦର୍ଶାଇ ଦିଆଯାଇଛି ।

| (୧୪) | ଧାତୁ+ | ପକ୍ଷ୍ୟ+ | ସାହାଯ୍ୟକାରୀ କ୍ରିୟା+ | | | କାଳ + ପୁରୁଷ |
|---|---|---|---|---|---|---|
| କ) ପଢୁଥାଇ | ପଢ୍ | ଉ | ଥା | - | - | ଇ |
| ଖ) ପଢ଼ିଥାଇ | ପଢ୍ | ଇ | ଥା | - | - | ଇ |

(୧୩)ର ଅସ୍ତିବାଚକ କ୍ରିୟା ଉପାଦାନ ସହ (୧୪)ର ନାସ୍ତିବାଚକ ଗୁଡ଼ିକୁ ତୁଳନା କଲେ ଏହାର ଲୁପ୍ତ ଉପାଦାନଗୁଡ଼ିକ ସହଜରେ ନିର୍ଣ୍ଣୟ କରିହେବ । (୧୪)ରେ

ଉଭୟ (ଖ) ଓ (ଘ)ର କାଳ ଓ ପୁରୁଷ + ବଚନ ରୂପାବଳୀ ମଧ୍ୟରେ କୌଣସି ଉପାଦାନ ଉପସ୍ଥିତ ନାହିଁ । କିନ୍ତୁ ୧୩ରେ ଏହି ସ୍ଥାନଗୁଡ଼ିକରେ ପ୍ରକାଶ୍ୟ ଉପାଦାନ ଗୁଡ଼ିକ ଆସିଛି । ସେଥିପାଇଁ ଆମକୁ ଗ୍ରହଣ କରିବାକୁ ହେବ ଯେ "ନାଇଁ" କ୍ରିୟାସହ ସଂଯୁକ୍ତ ହେଲେ କାଳ ଓ ପୁରୁଷ + ବଚନ ପ୍ରତ୍ୟୟ ବିଲୁପ୍ତ ହୁଏ ।

ଉପରର ପର୍ଯ୍ୟବେକ୍ଷଣାତ୍ମକ ନିର୍ଣ୍ଣୟକୁ ଅଧିକ ତଥ୍ୟସହ ବିଚାର କଲେ ଏହା ସଠିକ ନୁହେଁ ବୋଲି ଅନୁମାନ ହୁଏ । ସମସ୍ତ କ୍ରିୟା ପଦରେ ଉଭୟ କାଳ ଓ ପୁରୁଷ + ବଚନ ପ୍ରତ୍ୟୟ "ନାଇଁ"ର ଆଗମରେ ଲୁପ୍ତ ହୁଏ ନାହିଁ । ୧୫ରେ ଦର୍ଶାଇ ଦିଆଯାଇଥିବା ବାକ୍ୟ ଗୁଡ଼ିକର କ୍ରିୟାକୁ ବିଚାର କରାଯାଉ ।

(୧୫) କ) ତମେ ପାଢ଼୍ ପଢ଼୍ସ ।

ଖ) ତମେ ପାଠ୍ ନାଇଁ ପଢ଼ ।

ଗ) ସେ ଇହାଦେ ପାଠ୍ ପଢୁଥିବା ।

ଘ) ସେ ଇହାଦେ ପାଠ୍ ନାଇଁ ପଢୁଥିବା ।

(୧୫)ର (କ) ବାକ୍ୟର କ୍ରିୟା ଅଭ୍ୟାସିକ ବର୍ତ୍ତମାନ କାଳର ସାମାନ୍ୟ ରୂପ । (ଖ) ବାକ୍ୟର କ୍ରିୟା ଏହାର ନାସ୍ତିବାଚକ ରୂପ । ଏ ଦୁଇଟି କ୍ରିୟାର ରୂପତାତ୍ତ୍ୱିକ ଉପାଦାନ ଗୁଡ଼ିକୁ ୧୬ରେ ଦର୍ଶାଇ ଦିଆଯାଇଛି ।

| (୧୬) | ଧାତୁ + | କାଳ + | (ପୁରୁଷ+ବଚନ) ପ୍ରତ୍ୟୟ |
|---|---|---|---|
| କ) ପଢ଼୍ସ | ପଢ଼୍ | ସ୍ | ଅ |
| ଖ) ପଢ଼ | ପଢ଼୍ | - | ଅ |

(୧୬)ରୁ ଏହା ସ୍ପଷ୍ଟ ଯେ "ପଢ଼୍ସ"ର ନାସ୍ତିବାଚକ ରୂପରେ କାଳ ପ୍ରତ୍ୟୟଟି ବିଲୁପ୍ତ ହୋଇଛି ବର୍ତ୍ତମାନ ୧୫ର (ଗ) ବାକ୍ୟର କ୍ରିୟାକୁ ବିଚାର କରାଯାଉ । ଏହି କ୍ରିୟା ପ୍ରକଳ୍ପ କାଳର ପ୍ରବାହୀ ରୂପ । ୧୭ରେ ଏହି କ୍ରିୟାର ଆଭ୍ୟନ୍ତରୀଣ ଉପାଦାନ ଗୁଡ଼ିକୁ ସେମାନଙ୍କର ରୂପାବଳୀ ଜରିଆରେ ଦେଖାଇ ଦିଆଯାଇଛି ।

| (୧୭) | ଧାତୁ + | ପକ୍ଷ୍ୟ + | ସାହାଯ୍ୟକାରୀ କ୍ରିୟା + | କାଳ+ | ପୁରୁଷ |
|---|---|---|---|---|---|
| କ) ପଢୁଥିବା | ପଢ଼୍ | ଉ | ଥ | ଇଲ୍ | ଆ |

"ପଢୁଥବା" କ୍ରିୟାର ନାସ୍ତିକରଣ ରୂପ ୧୫ର (ଘ)ରେ ଆତ୍ମପ୍ରକାଶ କରିଛି ।

ଏହାର କୌଣସି ପରିବର୍ତ୍ତନ ହୋଇନି । ତେଣୁ ଏହାର ଆଭ୍ୟନ୍ତରୀଣ ଉପାଦାନ ଗୁଡ଼ିକ "ପଢୁଥିବା"ର ସମରୂପୀ । ତେଣୁ ଆମକୁ ଗ୍ରହଣ କରିବାକୁ ହେବ ଯେ ପ୍ରକଳ୍ପ କାଳ ଉପସ୍ଥିତ ଥିବା କ୍ରିୟାର ନାସ୍ତିକରଣ ରୂପରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହୁଏନି ।

ବର୍ତ୍ତମାନ (୧୮)ର ବାକ୍ୟ ଗୁଡ଼ିକୁ ଲକ୍ଷ୍ୟ କରାଯାଉ :

(୧୮) କ) ମୁଇଁ ପାଠ୍ ପଢୁଛେଁ ।

ଖ) ମୁଇଁ ପାଠ୍ ନାଇଁ ପଢ଼ବାର୍ ।

(କ) ଓ (ଖ) କ୍ରିୟା ରୂପକୁ (୧୯)ର (କ) ଓ (ଖ)ରେ ବ୍ୟାଖ୍ୟା କରାଯାଇଛି ।

| (୧୯) | ଧାତୁ + | ପକ୍ଷ୍ୟ + | ସାହାଯ୍ୟ + | କାଳ+ | ପୁରୁଷ |
|---|---|---|---|---|---|
| କ) ପଢୁଛେଁ | ପଢ଼ | ଉ | ଛ | | ଏଁ |
| ଖ) ପଢ଼ବାର୍ | ପଢ଼ | - | - | ବ୍ | ଆର୍ |

(୧୮)ର (କ) ବାକ୍ୟ ପ୍ରବାହୀ ବର୍ତ୍ତମାନ କାଳ ପ୍ରକାଶ କରୁଛି । ଏହି କାଳର ପ୍ରକାଶ୍ୟରୁପ ନାହିଁ । ଏହି କ୍ରିୟାର ନାସ୍ତିକରଣ ରୁପରେ (୧୯)ର (ଖ) ପୁରୁଷ+ବଚନ ପ୍ରତ୍ୟୟ ନାହିଁ । ପକ୍ଷ୍ୟ ଉପାଦାନଟି ମଧ୍ୟ ଏଥିରେ ଅନୁପସ୍ଥିତ । ଏହା ବ୍ୟତୀତ ଏହି କ୍ରିୟାରେ ଭବିଷ୍ୟତ କାଳ ପ୍ରତ୍ୟୟ "ବ" ଓ "ଆର" ଦେଖାଦେଇଛି । "ବ" ବାସ୍ତବରେ ଅସମାପିକା କ୍ରିୟା ପ୍ରତ୍ୟୟ ଏବଂ "ର" ସମ୍ବନ୍ଧପଦ ଚିହ୍ନ । ସେଥିପାଇଁ ଆମକୁ ଗ୍ରହଣ କରିବାକୁ ହେବ ଯେ (୧୮)ରେ ନାସ୍ତିକରଣ ପ୍ରକ୍ରିୟାଟି କ୍ରିୟାର କିଛି ଉପାଦାନ ବିଲୁପ୍ତ କରିବା ସାଙ୍ଗେ ସାଙ୍ଗେ କିଛି ନୂଆଁ ଉପାଦାନ କ୍ରିୟା ସହ ସଂଯୁକ୍ତ କରାଇଛି ।

ଏ ପର୍ଯ୍ୟନ୍ତ ହୋଇଥିବା ଆଲୋଚନାରେ ଛାୟାରେ ଆମେ ନାସ୍ତିକରଣ କ୍ରିୟାରୂପ ସଂପର୍କରେ କିଛି ସଠିକ ତଥ୍ୟ ଉପସ୍ଥାପିତ କରିପାରିବା । ନାସ୍ତିକରଣ କ୍ରିୟାରୂପରେ ଯେଉଁ ପରିବର୍ତ୍ତନ ଆଣେ ତାହା ସମସ୍ତ କ୍ରିୟାପଦରେ ସମାନଭାବେ

ଅନୁଭୁତ ହୁଏନି । ଏହାର ପ୍ରଭାବରେ କେତେକ କ୍ରିୟାରେ ଉଭୟ କାଳ ଓ ପୁରୁଷ ବଚନ ପ୍ରତ୍ୟୟ ଲୁପ୍ତ ହୁଏ । କେତେକ କ୍ରିୟାରେ କେବଳ କାଳପ୍ରତ୍ୟୟ ଲୁପ୍ତ ହୁଏ ଏବଂ କେତେକରେ ପକ୍ଷ୍ୟ, କାଳ ଓ ପୁରୁଷ + ବଚନ ପ୍ରତ୍ୟୟ ଲୁପ୍ତ ହେବା ସଙ୍ଗେ ନୂତନ ଉପାଦାନର ଆଗମ ହୁଏ । ଅନ୍ୟ କେତେକ କ୍ରିୟାରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରାଯାଏନି । ଲୁପ୍ତ ହୋଇଥିବା ଉପାଦାନଗୁଡ଼ିକ ହେଲେ ପକ୍ଷ୍ୟପ୍ରତ୍ୟୟ, କାଳପ୍ରତ୍ୟୟ ଓ ପୁରୁଷ ବଚନ ପ୍ରତ୍ୟୟ । ଏଗୁଡ଼ିକ କ୍ରିୟା ମଧ୍ୟରେ ବିଭିନ୍ନ ଅର୍ଥ ପ୍ରକାଶକ ଉପାଦାନ ରୂପେ ଆଲୋଚିତ ହୁଅନ୍ତି । ତେଣୁ ଏ ଗୁଡ଼ିକ ଯାଦୃଚ୍ଛିକ ଭାବେ ବିଲୁପ୍ତ ହୋଇ ନ ପାରନ୍ତି । ଏ ଗୁଡ଼ିକର ସମସ୍ତ ଅର୍ଥଗତ ଲକ୍ଷଣ ଅନନ୍ୟଭାବେ ପୁନରୁଦ୍ଧାର ହେବାର ସଂକେତ ନ ଥିଲେ ଏ ଗୁଡ଼ିକୁ ଗଠନ ମଧ୍ୟରୁ ଅପସାରିତ କରାଯାଇ ନପାରେ । ବର୍ତ୍ତମାନ ଏହି ପୁନରୁଦ୍ଧାର ପ୍ରକ୍ରିୟାଟି କିପରି କାର୍ଯ୍ୟକାରୀ ହୁଏ ସେ ସମ୍ପର୍କରେ ଆମେ କିଛି ସୂଚନା ଦେବା ।

ବିଲୁପ୍ତ ଉପାଦାନ ଗୁଡ଼ିକର ପୁନରୁଦ୍ଧାର ୩ଟି ଉପାୟରେ ସାଧିତ ହୋଇଥାଏ – ବାକ୍ୟାତ୍ମକ ବିଋର, ପ୍ରବଚନ ବିଋର ଓ ବୈସାଦୃଶ୍ୟ ବିଋର । ପ୍ରଥମେ ବାକ୍ୟାତ୍ମକ ବିଋର ସାହାଯ୍ୟରେ କିପରି କ୍ରିୟା ଉପାଦାନ ପୁନରୁଦ୍ଧାର ହୁଏ ତାହା ବିଋର କରାଯାଉ । ଏଥିପାଇଁ (୨୦)ର ଉଦାହରଣ ଗୁଡ଼ିକୁ ଲକ୍ଷ୍ୟ କରାଯାଉ –

(୨୦) କ) ତୁଇ ପାଠ୍ ନାହିଁ ପଢ଼୍ବାର ।

ଖ) ସେମାନେ ପାଠ୍ ନାହିଁ ପଢ଼ବାର ।

ଗ) ତମେ ପାଠ୍ ନାହିଁ ପଢ଼ି ।

ଘ) ଆମେ ପାଠ୍ ନାହିଁ ପଢ଼ି ।

(୨୦)ରେ (କ) ଓ (ଖ) ବାକ୍ୟ ଦ୍ୱୟର ନାସ୍ତିକୃତ କ୍ରିୟାଦ୍ୱୟ ସମାନ । ଏହି କ୍ରିୟା ମଧ୍ୟରେ ପୁରୁଷ + ବଚନ ପ୍ରତ୍ୟୟ ନାହିଁ । ସେଥିପାଇଁ (କ) ଓ (ଖ)ରେ ତୁଇ ଓ ସେମାନେ କର୍ତ୍ତା ରୂପେ ଆସିଥିଲେ ମଧ୍ୟ ଏହି କ୍ରିୟାରେ କୌଣସି ପରିବର୍ତ୍ତନ ଆସିନାହିଁ । ବର୍ତ୍ତମାନ ପ୍ରଶ୍ନ ଉଠୁଛି ପୁରୁଷ + ବଚନର ଏହି ବିଲକ୍ଷଣ କିପରି ଭାବେ ପୁନରୁଦ୍ଧାର ହେବ ? ଏହି ସଂପୂର୍ଣ୍ଣବାକ୍ୟ ଦୁଇଟିକୁ ବିଋରକଲେ ଜଣାପଡ଼େ ଯେ

ଏହି ବିଲକ୍ଷଣ ଗୁଡ଼ିକ କେବଳ କର୍ତ୍ତା ଉପାଦନ ଗୁଡ଼ିକରେ ଅଛି । ସେଥିପାଇଁ ଏହି ବାକ୍ୟାତ୍ମକ ଗଠନରେ କର୍ତ୍ତାଠାରୁ କେବଳ ଏହି ବିଲକ୍ଷଣ ପୁନରୁଦ୍ଧାର ହେବ । ଯଦି କର୍ତ୍ତାର ଶାବ୍ଦିକ ପ୍ରକାଶ୍ୟରୂପ ଅନୁପସ୍ଥିତ ଥିବ ତେବେ - ବାକ୍ୟଗୁଡ଼ିକ ବ୍ୟାଖ୍ୟା କରାଯାଇ ପାରିବ ନାହିଁ । ଏହାର ଉଦାହରଣ (୨୧)ରେ ଦିଆଯାଇଛି ।

(୨୧) ପାଠ୍ ନାଇଁ ପଢ଼ବାର । *

(୨୧)ର ଗଠନଟି ଅଗ୍ରହଣୀୟ କାରଣ ଏଥିରେ କର୍ତ୍ତାର ବିଲକ୍ଷଣ ଗୁଡ଼ିକୁ ପୁନରୁଦ୍ଧାର କରି ହେଉନି ଯେହେତୁ କ୍ରିୟାର ନିର୍ଦ୍ଦିଷ୍ଟଭାବେ କୌଣସି ପୁରୁଷ ବଚନ ନିର୍ଦ୍ଦେଶ ନାହିଁ । ଆମେ କର୍ତ୍ତାସ୍ଥାନରେ ଯେ କୌଣସି ପୁରୁଷ + ବଚନ ଧାରୀ କର୍ତ୍ତା ଅବସ୍ଥାପିତ କରିପାରିବା । ସେଥିପାଇଁ ବାକ୍ୟଟିର ଅର୍ଥ କ୍ଷେତ୍ରରେ ଅସଙ୍ଗତି ପରିଦୃଷ୍ଟ ହୁଏ । କର୍ତ୍ତାଟି ଅନନ୍ୟଭାବେ ଉପଲବ୍ଧି ହୋଇ ପାରେନି । ଫଳରେ ଗଠନଟି ଗ୍ରହଣ ଯୋଗ୍ୟତା ହରାଇ ବସିଛି । ଏଭଳି ବାକ୍ୟରେ ଅର୍ଥଗତ ସଂଗତି ରକ୍ଷା କରିବାକୁ ହେଲେ କର୍ତ୍ତାର ଶାବ୍ଦିକରୂପ ବାଧ୍ୟତାମୂଳକ । ଏହା ବ୍ୟତୀତ ଉପଯୁକ୍ତ ପ୍ରବଚନ ପ୍ରସଙ୍ଗ ସୃଷ୍ଟିକରି ଅସଙ୍ଗତି ଦୁର କରାଯାଇ ପାରେ । (୨୨)ର ପ୍ରବଚନ ପ୍ରସଙ୍ଗକୁ ବିଚାର କରାଯାଉ :

(୨୨) କ) ପ୍ରଶ୍ନ : ମୁଇଁ ଇହାଦେ ଗୀତା ପଢୁଛେଁ । ତୁଇ ପଢୁଛୁ ?

ଖ) ଉତ୍ତର : ନାଇଁ ପଢ଼ବାର ।

(୨୨)ର (ଖ)ରେ କର୍ତ୍ତା ନାହିଁ । ତା ସତ୍ତ୍ୱେ ବି ବାକ୍ୟଟି ବୈଧ । ଏହାର କାରଣ ଏହି ବାକ୍ୟ ପୂର୍ବରୁ ପଚରାଯାଇଥିବା ପ୍ରଶ୍ନ "ତୁଇ ପଢୁଛୁ" ପ୍ରଶ୍ନରୁ କର୍ତ୍ତା ଉଦ୍ଧାର କରାଯାଇ (୨୨) (ଖ)ର ବାକ୍ୟଟି ବୈଧ ହୋଇଛି । (୨୦)ର (ଗ) ଓ (ଘ) ବାକ୍ୟକୁ ମଧ୍ୟ ଏଭଳି ବ୍ୟାଖ୍ୟା କରାଯାଇ ପାରିବ ।

ଉପର ଆଲୋଚନାରୁ ଏହା ସ୍ପଷ୍ଟ ଯେ "ନାଇଁ" ପ୍ରଭାବରେ ଲୁପ୍ତ ହୋଇଥିବା ଉପାଦାନ ଗୁଡ଼ିକ ବାକ୍ୟାତ୍ମକ ଗଠନ ଭିତରୁ କିମ୍ବା ପ୍ରବଚନ ପ୍ରସଙ୍ଗ ମଧ୍ୟରୁ ପୁନରୁଦ୍ଧାର କରି ହେବ । ଏହା ବ୍ୟତୀତ ବାକ୍ୟଗୁଡ଼ିକ ବିଶେଷକରି "ନାଇଁ" ଦ୍ୱାରା ଲୁପ୍ତ ହେଉଥିବା ଅନେକ କାଳର ଲକ୍ଷଣ କେବଳ ପ୍ରବଚନ ପ୍ରସଙ୍ଗରୁ ହିଁ

ପୁନରୁଦ୍ଧାର ହୋଇଥାଏ । ଉଦାହରଣ ସ୍ୱରୂପ ସାମାନ୍ୟ ଅତୀତ ଓ ସଂପୂର୍ଣ୍ଣ ବର୍ତ୍ତମାନ କାଳର ନାସ୍ତିକୃତ କ୍ରିୟାଗୁଡ଼ିକୁ ବିଚାର କରାଯାଉ । "ନାଇଁ" ବ୍ୟବହୃତ ହେବାପରେ ଉଭୟ କାଳର କ୍ରିୟାରୂପ ସମାନ ହୋଇଯାଏ । ଏହା (୨୩)ରେ ଦର୍ଶାଇ ଦିଆଯାଇଛି ।

(୨୩) କ) ମୁଇଁ ପାଠ ପଢ଼ିଲିଁ ।

ଖ) ମୁଇଁ ପାଠ୍ ନାଇଁ ପଢ଼ି ।

ଗ) ମୁଇଁ ପାଠ୍ ପଢ଼ିଛେଁ ।

ଘ) ମୁଇଁ ପାଠ୍ ନାଇଁ ପଢ଼ି ।

(୨୩)ର (କ) ଓ (ଗ) ବାକ୍ୟର କ୍ରିୟାରୂପ ଯଥାକ୍ରମେ ସାମାନ୍ୟ ଅତୀତ ଓ ସଂପୂର୍ଣ୍ଣ ବର୍ତ୍ତମାନ (ଗ) ଓ (ଘ)ରେ ଏ ଗୁଡ଼ିକର ନାସ୍ତିକୃତ ରୂପରେ କୌଣସି ପାର୍ଥକ୍ୟ ନାହିଁ ତେଣୁ ଏହି ନାସ୍ତିବାଚକ ବାକ୍ୟର କାଳ କେବଳ ଉପଯୁକ୍ତ ପ୍ରବଚନ ମାଧ୍ୟମରେ ନିର୍ଦ୍ଧାରଣ କରିହେବ ।

ଶେଷରେ ଆମେ ବୈସାଦୃଶ୍ୟ ବିଚାର ସମ୍ପର୍କରେ କିଛି ସୂଚନା ଦେବା । ଏହା ମୁଖ୍ୟତଃ କାଳର ବିଲକ୍ଷଣ ପୁନରୁଦ୍ଧାର କରିବାରେ ସାହାଯ୍ୟ କରେ ।

(୨୪) କ) ମୁଇଁ ପାଠ୍ ନାଇଁ ପଢ଼ବାର ।

ଖ) ମୁଇଁ ପାଠ୍ ନାଇଁ ପଢୁଥାଇ ।

(୨୪)ର (କ)ରେ ପ୍ରବାହୀ ବର୍ତ୍ତମାନ କାଳର କ୍ରିୟାରୂପ ଆସିଛି ଏବଂ (ଖ)ରେ ପ୍ରବାହୀ ଅତୀତର କ୍ରିୟାରୂପ ଦେଖାଦେଇଛି । ଏହି ରୂପ ଦୁଇଟି ମଧ୍ୟରେ ଥିବା ରୂପତାତ୍ତ୍ୱିକ ବୈସାଦୃଶ୍ୟ ଏମାନଙ୍କୁ ବ୍ୟାଖ୍ୟାକରିବାରେ ସହାୟକ ।

ଏହି ଅଧ୍ୟାୟ ଶେଷ କରିବା ପୂର୍ବରୁ "ନାଇଁ" ଦ୍ୱାରା ପ୍ରଭାବିତ ନ ହୋଇ ଅପରିବର୍ତ୍ତିତ ରହୁଥିବା କ୍ରିୟାରୂପ ସମ୍ପର୍କରେ ସଂକ୍ଷେପରେ ଟିପ୍ପଣୀ ଦେବା ଆବଶ୍ୟକ । "ନାଇଁ" ପ୍ରକଳ୍ପକାଳର କ୍ରିୟା ରୂପକୁ ଓ ଅନୁଜ୍ଞାବାଚକ କ୍ରିୟାଗୁଡ଼ିକୁ ପ୍ରଭାବିତ କରି ପାରେନା । ଏହା, ଏହି କ୍ରିୟାମାନଙ୍କର ଏକ ବିଶେଷ ଲକ୍ଷଣ । ଏମାନଙ୍କର ଏହି ପ୍ରକୃତିରୁ ଅନୁମାନ କରିହେବ ଏମାନେ କାହିଁକି ଅପରିବର୍ତ୍ତିତ ରହନ୍ତି । ସମ୍ଭବତଃ ଆମେ ଯେଉଁ ତିନୋଟି ପୁନରୁଦ୍ଧାର ପ୍ରକ୍ରିୟା ଆଲୋଚନା କଲେ ସେଗୁଡ଼ିକ ଏହି

କ୍ରିୟା ପରିପ୍ରେକ୍ଷୀରେ କାର୍ଯ୍ୟକାରୀ ହୋଇ ପାରେନା । ପ୍ରକଳ୍ପକାଳ ଏକ ବିଶେଷ ପ୍ରତ୍ୟୟ ମାଧ୍ୟମରେ କ୍ରିୟା ମଧ୍ୟରେ ଆତ୍ମପ୍ରକାଶ କରିଥାଏ । ଆମେ ପୂର୍ବରୁ କହିଛେଁ, କାଳ ବିଲୁପ୍ତ ହେଲେ ମୁଖ୍ୟତଃ ପ୍ରବଚନ ପ୍ରସଙ୍ଗ ଏହାକୁ ପୁନରୁଦ୍ଧାର କରିପାରେ । ପ୍ରକଳ୍ପ କାଳପାଇଁ ଉପଯୁକ୍ତ ପ୍ରବଚନ ପ୍ରସଙ୍ଗ ସୃଷ୍ଟିହୋଇ ପାରେନା କିମ୍ବା ଅନ୍ୟକୌଣସି ବାକ୍ୟାତ୍ମକ ବିଚାରକରି ଆମେ ଏହାର ଲକ୍ଷଣ ନିର୍ଣ୍ଣୟ କରିପାରିବା ନାହିଁ । ପୁଣି ଅନୁଜ୍ଞାବାଚକ କ୍ରିୟାରେ କେବଳ ଗୋଟିଏ ପ୍ରତ୍ୟୟ ଉଭୟ ପୁରୁଷ + ବଚନ ଓ ଅନୁଜ୍ଞାଭାବ ପ୍ରକାଶ କରିବା ପାଇଁ ବ୍ୟବହୃତ ହୁଏ । ସେଥିପାଇଁ ଏହାର ବିଲୁପ୍ତରେ କର୍ତ୍ତା ଠାରୁ କେବଳ ପୁରୁଷ + ବଚନ ଉଦ୍ଧାର କରିହେବ କିନ୍ତୁ ଅନୁଜ୍ଞାଭାବ ପୁନରୁଦ୍ଧାର ହୋଇପାରିବ ନାହିଁ । ସେଥିପାଇଁ ଏ ଉଭୟକାଳର କ୍ରିୟାରୁପ "ନାଇଁ" ଦ୍ୱାରା ପ୍ରଭାବିତ ନ ହୋଇ ଅପରିବର୍ତ୍ତିତ ରହେ ।

ଏହି ପ୍ରବନ୍ଧରେ କୋଶଲୀର ନାସ୍ତିକରଣ ପ୍ରକ୍ରିୟା ସମ୍ପର୍କରେ ଆମେ ଏକ ସଂକ୍ଷିପ୍ତ ବିବରଣୀ ଦେବାକୁ ଚେଷ୍ଟା କରିଛୁଁ । ଏହା ମୁଖ୍ୟତଃ ରୂପତାତ୍ତ୍ୱିକ ଓ ବାକ୍ୟାତ୍ମକ ବିଶ୍ଳେଷଣ ମଧ୍ୟରେ ସୀମିତ । ଏହାର ଅର୍ଥଗତ ଆଲୋଚନାର ଉଦ୍ଦେଶ୍ୟ ମୂଳକ ଭାବରେ ଅନ୍ତର୍ଭୁକ୍ତ କରି ନାହୁଁ । ବାକ୍ୟାତ୍ମକ ଅର୍ଥଗତ ଆଲୋଚନା ଅନ୍ତଃକ୍ରିୟା ଯେ କୌଣସି ଭାଷାପାଇଁ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରକ୍ରିୟା । ଏଣୁ ଏହି ପ୍ରାରମ୍ଭିକ ପ୍ରଚେଷ୍ଟାରେ ଆଲୋଚନା ପରିସରରୁ ତାହାକୁ ବହିର୍ଭୁତ ରଖିବା ସ୍ୱାଭାବିକ । ଏହି ପ୍ରବନ୍ଧରେ ଉପସ୍ଥାପିତ କରାଯାଇଥିବା ମୌଳିକ ନିଷ୍କର୍ଷକୁ ଲକ୍ଷ୍ୟକଲେ ମନେହୁଏ କୋଶଲୀର ନାସ୍ତିକରଣ ପ୍ରକ୍ରିୟା ମାନକ ଓଡ଼ିଆଠାରୁ ବହୁଦୃଷ୍ଟିରୁ ଭିନ୍ନ ଓ ଅନନ୍ୟ । ପରବର୍ତ୍ତୀ ସ୍ତରରେ ଏହାର ତୁଳନାତ୍ମକ ଅଧ୍ୟୟନ ଉଭୟର ସାଦୃଶ୍ୟ-ବୈସାଦୃଶ୍ୟ କଳନାପାଇଁ ସହାୟକ ହେବ । ଏହି କ୍ଷୁଦ୍ର ଆଲୋଚନାଟି ପାଠକ ଓ ଗବେଷକମାନଙ୍କୁ ସେଭଳି ପ୍ରେରଣା ଯୋଗାଇଲେ ଆମର ଚେଷ୍ଟା ଚରିତାର୍ଥ ହେବ ।

*ପାଦଟୀକା :*

*୧ - "ନାଇଁ"ର ଶାବ୍ଦିକ ରୂପ ଆଞ୍ଚଳିକ ଭେଦରେ "ନି", "ନେଇଁ, "ନୁହେଁ" ଉପଲବ୍ଧ ହେଲେହେଁ ବର୍ତ୍ତମାନ ପାଇଁ ଆମେ "ନାଇଁ" କୁ ହିଁ ମାନକ ଶବ୍ଦ ରୁପେ ଗ୍ରହଣ କରୁଛୁ ।*

୨ – ଏହା ସପକ୍ଷରେ ଆଉଏକ ଭାଷାତାତ୍ତ୍ୱିକ ତଥ୍ୟ ଆଲୋଚନା କରାଯାଇ ପାରେ ।

୧)　　କ) ପ୍ରଶ୍ନ : ସେ ଝନେ ଡ଼ାକ୍‌ତର ?

　　　ଖ) ଉତ୍ତର :　　୧) ନାଇଁ ।

　　　　　　　　　୨) ନାଇଁ ସେ ।

(୧) କ୍ଷୁଦ୍ର ବାଚିକ ପ୍ରସଙ୍ଗର ଉଦାହରଣ । ଏଥିରେ (କ) ଏକ ହଁ / ନାହିଁ ପ୍ରଶ୍ନ ବାଚକ (ଖ)ରେ ଏହାର ନାସ୍ତିବାଚକ ଉତ୍ତର "ନାଇଁ" ଓ "ନାଇଁ ସେ" ଯଥାକ୍ରମେ (୧) ଓ (୨)ରେ ଲିପିବଦ୍ଧ କରାଯାଇଛି କିନ୍ତୁ ପ୍ରଶ୍ନର ସଠିକ ଉତ୍ତର ରୂପେ (ଖ) ର (୨) ହିଁ ଗ୍ରହଣଯୋଗ୍ୟ । ଉତ୍ତର ଦୁଇଟିକୁ ଲକ୍ଷ୍ୟକଲେ ଜଣାପଡ଼େ (୧)ରେ କେବଳ "ନାଇଁ" ଆସିଛି ଏବଂ (୨)ରେ "ନାଇଁ" "ସେ" ସହ ଆସିଛି । ଏହା ପ୍ରମାଣ କରୁଛି ଯେ ନାହିଁର ସ୍ୱାଧୀନ ସ୍ଥିତି ନାହିଁ। ଏଠାରେ "ସେ" ଏକ ବ୍ୟର୍ଥପଦ "ନାଇଁ"ର ସ୍ଥିତିକୁ ପ୍ରମାଣସିଦ୍ଧ କରିବାପାଇଁ ଆତ୍ମପ୍ରକାଶ କରିଛି ।

୩-　　(୭)ର ସାହାଯ୍ୟକାରୀ କ୍ରିୟା ତଳେ ଆସିଥିବା "ଥ" ଉପାଦାନଟି ଅନେକ କ୍ଷେତ୍ରରେ "ଥା" ରୂପେ ମଧ୍ୟ ଆତ୍ମପ୍ରକାଶ କରିଥାଏ । ଏହି ପରିବର୍ତ୍ତନର ରୂପତାତ୍ତ୍ୱିକ କାରଣ ରହିଛି । ବର୍ତ୍ତମାନପାଇଁ ତାହା ଏହି ପ୍ରବନ୍ଧର ଆଲୋଚନା ପରିସର ବହିର୍ଭୂତ ।

୪ –　　ବର୍ତ୍ତମାନ କାଳର ପ୍ରବାହୀପକ୍ଷର ନାସ୍ତିକୃତ କ୍ରିୟାରେ ଯେଉଁ "ଇବ୍" ଓ "ଆ" ଦେଖାଯାଏ, ଏହାର ବାକ୍ୟାତ୍ମକ ପ୍ରକୃତି ଆଲୋଚନା କରିବା ଆମର ଉଦ୍ଦେଶ୍ୟ ବହିର୍ଭୂତ । କେବଳ ଏହି ପରିବର୍ତ୍ତନର ସଙ୍କେତ ଦେବା ବର୍ତ୍ତମାନ ପାଇଁ ଯଥେଷ୍ଟ ।

**(ଏ ପ୍ରବନ୍ଧଟିର ସହଲେଖକ ଅଗ୍ରଜ ଡ. ରଥ ନାୟକଙ୍କ ତତ୍ତ୍ୱାବଧାନରେ 'ପଶ୍ଚିମ ଓଡ଼ିଶାର ଭାଷାରେ ନାସ୍ତିକରଣ' ଶୀର୍ଷକରେ ସପ୍ତର୍ଷିରେ ଏପ୍ରିଲ ୧୯୯୨ ମସିହାରେ ପ୍ରଥମେ ପ୍ରକାଶିତ । ଆଜିର ଏ ଅବସରରେ ଡ. ନାୟକଙ୍କ ନିକଟରେ ମୁଁ କୃତଜ୍ଞ)**

# କୋଶଲୀ ଭାଷାର ସ୍ୱୀକୃତି ପ୍ରସଙ୍ଗ

ଭାଷା ଉପଭାଷା ଏକ ସ୍ୱୀକୃତି ଅସ୍ୱୀକୃତିର କଥା । ଗୋଟିଏ ବିଶାଳ ଅଞ୍ଚଳ, ଲକ୍ଷାଧିକ ଲୋକ, ସେମାନେ କହୁଥିବା କଥା ଗୋଟିଏ ଭାଷାହେବ ଏମିତି ନୁହେଁ । କେତେ ଲୋକ କହୁଛନ୍ତି କେତେ ବିଶାଳ ଅଞ୍ଚଳରେ ସେମାନଙ୍କର ବସତି, ବ୍ୟାକରଣ ବହି ଓ ଅଭିଧାନ ଅଛି କି ନାହିଁ , ସାହିତ୍ୟ କେତେ ସମୃଦ୍ଧ ଭାଷାର ବିଚାର ବେଳେ ଏସବୁ କଥା ଆଦୌ ପଡ଼େ ନାହିଁ । ଭାଷାପାଇଁ ଦରକାର ଖାଲି ଗୋଟିଏ କଥାର, ସ୍ୱୀକୃତିର । ଯେଉଁମାନେ କହୁଛନ୍ତି ସେ ଭାଷାକୁ, ସେମାନେ ପ୍ରଥମେ ସ୍ୱୀକୃତି ଦିଅନ୍ତୁ ଏହା ଏକ ଭାଷା, ଏହାର ଭାବ ପ୍ରକାଶର ଭଙ୍ଗୀ ଅଲଗା । ଏହାର ସଂରଚନା ଅଲଗା, ଶବ୍ଦ ଆଉ ସଂସ୍କୃତି ଅଲଗା । ଏହା ଗୋଟିଏ ବିଶ୍ୱାସ ସୃଷ୍ଟିକରିବ । ସେ ବିଶ୍ୱାସରୁ ଜନ୍ମନେବ ଗୋଟେ ସ୍ୱାଭିମାନ । ଯେଉଁ ଭାଷା ଆମେ କହୁଛୁଁ ତାହା ଅପର ସ୍ୱୀକୃତ ଭାଷାମାନଙ୍କଠାରୁ ଭିନ୍ନ, କେଉଁ ଗୁଣରେ ଊଣା ନୁହେଁ ଏମିତି ଏକ ବିଶ୍ୱାସ ପ୍ରସରିଯିବ । ସେମାନଙ୍କ ଭାଷାବି ହୋଇଯିବ ଏକ ସ୍ୱୀକୃତ ଭାଷା ।

ଆଜକୁ ଚାରିଶହ ବର୍ଷ ତଳେ ମୈଥିଳୀ ଓ ଅବଧୀ ଭାଷାଥିଲା ଉତ୍ତର ଭାରତର ସାହିତ୍ୟ ଓ ସଂସ୍କୃତିର ଭାଷା । ବିଦ୍ୟାପତି ପରି ଅନେକ କବି ମୈଥିଳୀ ଭାଷାରେ ଶହଶହ ଗୀତ ଲେଖିଥିଲେ । ବୈଷ୍ଣବ ଧର୍ମର ପୃଷ୍ଠପୋଷକତା ବି ପାଇଥିଲା ଏଇ ଦୁଇ ଭାଷା । ତୁଳସୀ ଦାସ ଅବଧୀରେ ରାମଚରିତ ମାନସ ଲେଖିଲେ । ବିଦ୍ୟାପତିଙ୍କର ଗୀତ, ତୁଳସୀ ଦାସଙ୍କ ରାମାୟଣ ବଂଚିଗଲା । ହେଲେ ଭାଷା

ବଂଚିପାରିଲା ନାହିଁ । ସାହିତ୍ୟ ଯଦି ଭାଷାକୁ ବଞ୍ଚେଇ ପାରୁଥାନ୍ତା ହଜାର ହଜାର ଗ୍ରନ୍ଥ, ଅଗଣିତ ପାଠକ ଥିବା ସଂସ୍କୃତ ଭାଷାକୁ ଲୋକେ ମୃତ ଭାଷା କହନ୍ତେ ନାହିଁ । କବିମାନେ ଯଦି ଭାଷାକୁ ସ୍ୱୀକୃତି ଦେଇପାରୁଥାନ୍ତେ, ଅବଧୀ ଆଉ ମୈଥିଳୀକୁ ତୁଳସୀ ଦାସ ଓ ବିଦ୍ୟାପତି ନିଶ୍ଚୟ ସ୍ୱୀକୃତି ଆଣିଦେଇଥାନ୍ତେ । ଭାଷା ବଞ୍ଚେଇ ରଖିବା ପାଇଁ, ସ୍ୱୀକୃତି ଦେବାପାଇଁ , ଗଦାଗଦା ବହିଠାରୁ କେତୋଟି ସ୍ୱାଭିମାନୀ ଜିଭ ହିଁ ଯଥେଷ୍ଟ । ଭାଷା ଜିଭରେ ହିଁ ବଞ୍ଚେ । ସାମାଜିକ ଓ ରାଜନୈତିକ କାରଣରୁ ନିର୍ଦ୍ଧାରିତ ହୁଏ ତାହା ଭାଷା ନା ଉପଭାଷା । ସେଥିପାଇଁ Dr. S.K. Varma ତାଙ୍କ Modern linguistics ବହିର ଅଷ୍ଟମ ପୃଷ୍ଠାରେ ଲେଖିଛନ୍ତି: How and when a dialect is given the lable of a language depends not on linguistics, but on socio political factors. This means that every dialect is a patential language whether a linguistics system used by a speech community is dilect or a language is often decided by social attitudes.

ଯେଉଁ ଭାଷା ସ୍ୱୀକୃତି ପାଏ, ସ୍ୱୀକୃତି ଦିନରୁ କେତୋଟି ଭାଷାକୁ ଆହରଣ ଓ ଆକର୍ଷଣ ମାଧ୍ୟମରେ ଅକ୍ତିଆର କରିବାର ଆରମ୍ଭ କରିଦିଏ । ଅପର ଭାଷାକୁ ଆକର୍ଷଣ କରେ ତାର ସାମାଜିକ ଓ ସାଂସ୍କୃତିକ ଉଛପଣ ମାଧ୍ୟମରେ ଏବଂ ଆହରଣ ମାଧ୍ୟମରେ ସ୍ୱୀକୃତ ଭାଷା ଚତୁରତାର ସହ ଅସ୍ୱୀକୃତ ଭାଷାର ନୂଆ ସଂରଚନାମାନଙ୍କୁ ନିଜର କରିକରି ପୁରା ଭାଷାଟିକୁ ହିଁ ଅକ୍ତିଆର କରିନିଏ । ଏ ଅବସ୍ଥା ସାରା ଭାରତରେ ସବୁବେଳେ ସବୁସ୍ଥାନରେ ଚାଲିଆସୁଛି । ଭାରତପରି ଅନେକ ଭାଷାଥିବା ଗୋଟିଏ ଦେଶରେ ସାମାଜିକ ଓ ରାଜନୈତିକ ଚେତନାର ବିଷମତା ଥିବା ଏକ ମହା ଭୂଖଣ୍ଡରେ ଏମିତି ଚାଲିରହିବା ସ୍ୱାଭାବିକ । ଭାରତୀୟ ସମ୍ବିଧାନର ଅନୁଚ୍ଛେଦ ୩୫୦-B ଅନୁସାରେ "ଭାଷାଗତ ସଂଖ୍ୟାଲଘୁ ଗୋଷ୍ଠୀର ସୁବିଧା ଅସୁବିଧା ବିଷୟରେ ତଦାରଖ କରି ସେମାନଙ୍କର ଭାଷା ଓ ସ୍ୱାର୍ଥର ସୁରକ୍ଷା ଲାଗି ପର୍ଯ୍ୟାୟ କ୍ରମେ ରାଷ୍ଟ୍ରପତିଙ୍କୁ ବିବରଣୀ ପ୍ରଦାନ କରିବା ପାଇଁ ରାଷ୍ଟ୍ରପତିଙ୍କ ଦ୍ୱାରା ଜଣେ ସ୍ୱତନ୍ତ୍ର ଅଧିକାରୀ ନିଯୁକ୍ତ ହୋଇପାରିବେ । ଏହି ବିବରଣୀଗୁଡ଼ିକ ସଂସଦର ଉଭୟ ସଦନରେ ଉପସ୍ଥାପିତ

ହେବା ସଙ୍ଗେସଙ୍ଗେ ଏଥିପ୍ରତି ସଂପୃକ୍ତ ରାଜ୍ୟସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯିବ । ପୁଣି ସମ୍ବିଧାନର ସପ୍ତମ ସଂଶୋଧନ ଦ୍ୱାରା ସୃଷ୍ଟି ହୋଇଥିବା ଅନୁଚ୍ଛେଦ ୩୫୦-ଝରେ ବ୍ୟବସ୍ଥା କରାଯାଇଛି ଯେ ପ୍ରତ୍ୟେକ ରାଜ୍ୟ ସରକାର ଭାଷାଭିତ୍ତିକ ସଖ୍ୟାଲଘୁ ଶ୍ରେଣୀ ଛାତ୍ରଛାତ୍ରୀମାନଙ୍କୁ ପ୍ରାଥମିକ ବିଦ୍ୟାଳୟସ୍ତରରେ ସେମାନଙ୍କ ମାତୃଭାଷା ମାଧମରେ ଶିକ୍ଷାଦାନ କରିବେ ଓ ଏ ସଂପର୍କରେ ରାଷ୍ଟ୍ରପତି ରାଜ୍ୟସରକାରମାନଙ୍କୁ ନିର୍ଦ୍ଦେଶ ଦେଇପାରିବେ । ଭାରତର ରାଷ୍ଟ୍ରପତି କୌଣସି ଏକ ଭାଷାର ଯୋଗ୍ୟତା ସ୍ଥିର କରିବା ପାଇଁ କମିଶନ୍ ସ୍ଥାପନ କରିପାରିବେ, କମିଶନଙ୍କ ବିବରଣୀ ଭିତ୍ତିରେ ସମ୍ବିଧାନର ଅଷ୍ଟମ ଅନୁସୂଚୀରେ କୌଣସି ଏକ ଭାଷା ରହିବାପାଇଁ ଯୋଗ୍ୟ ବିବେଚିତ ହୋଇପାରିବ ଏବଂ ଭାଷାଟି ସାମ୍ବିଧାନିକ ସ୍ୱୀକୃତି ପାଇପାରିବ ।

ସାମ୍ବିଧାନିକ ସ୍ୱୀକୃତି ବିନା କୌଣସି ଏକ ଭାଷା ବେଶିଦିନ ବଞ୍ଚି ପାରିବ ନାହିଁ ଏମିତି ନୁହେଁ । ଗୋଟିଏ ଭାଷାର ଭାଗ୍ୟ ସବୁଦିନ ଅସ୍ୱୀକୃତ ହୋଇ ରହିଯିବ ଏମିତି ବି ନୁହେଁ । ଅପର ଭାଷାର ଆହରଣ ଓ ଅପର ଭାଷାର ଆକର୍ଷଣକୁ ଉପେକ୍ଷାକରି ଭାଷାଟି ଯଦି ଲୋକଙ୍କର ଜିଭରେ ବଞ୍ଚିରହି ପାରିବ, ଲୋକଙ୍କ ଭିତରେ ଯଦି ଭାଷାକୁ ବଞ୍ଚାଇ ରଖିବାର ସ୍ୱାଭିମାନ ସୃଷ୍ଟିହେବ ତେବେ ଆଜି ନ ହେଲେ କାଲି ତାହା ଏକ ଭାଷାର ସ୍ୱୀକୃତି ନିଶ୍ଚୟ ପାଇବ । ନିଜ ଭାଷା ଓ ସଂସ୍କୃତିକୁ ବଞ୍ଚେଇବା ପାଇଁ ଦାବୀ କରିବା ଅପରାଧ ନୁହେଁ ଅଧିକାର । ସଂମ୍ବିଧାନର ତୃତୀୟ ଭାଗର ୨୯-(୧) ଅନୁଚ୍ଛେଦରେ ଲେଖାଅଛି: Any Section of the Citizens residing in the territory of India or any part there of having a distinct Language Script or Culture of its own shall have the right to conserve the same .

କୋଶଲୀ ଭାଷା ବିଷୟର ଆଲୋଚନାର ପରଂପରା ବେଶୀ ଦିନର ନୁହେଁ । ଏହାର ଅର୍ଥ ନୁହେଁ ଯେ କୋଶଲୀ ଭାଷା ଏହା ଆଗରୁ ଆଦୌ ନ ଥିଲା । ହଠାତ୍ ଦିନେ କିଛି ଲୋକ ଠିକ୍ କଲେ ଆମେ ଗୋଟିଏ ଭାଷା କହିବା, ସେମିତି ହୋଇନାହିଁ । ଠିକ୍ ଏହାର ବିପରୀତ ହିଁ ହୋଇଛି । ହଠାତ୍ ଆମେ ବହିପତ୍ର, ଶିକ୍ଷିତ ସମାଜ

ବିଦ୍ୟାଳୟ ଠାରୁ ଆଦେଶ ପାଇଛୁଁ ଗୋଟିଏ ସାମାଜିକ ଭାଷାକୁ ଭୁଲିଯିବାପାଇଁ । ଆମେ ଏଇ ଭାଷାରେ ତଥାପି କହିଚାଲିଛୁଁ। ଆମ ଭିତରେ ହିଁ ଭାଷାଟି ସରିଯାଉନାହିଁ । ଆଜି ନୁହେଁ ଅନେକ ଦିନରୁ ଆମର ଏଇ ଚେଷ୍ଟା ଅଜାଣତରେ ଜାରି ରହିଛି । ଆଜି ବିଦ୍ୟାଳୟ ଓ ବହି ଜଗତର ଭାଷାଠାରୁ ଏଭାଷାକୁ ବଞ୍ଚେଇ ରଖିବା ଯଦିଓ ଅଧିକ କଷ୍ଟକର ହୋଇପଡୁଛି ।

ମଣିଷ ଶିଶୁ ସ୍ୱତଃ ଯେଉଁଭାଷା ଶିଖିପାରେ ମାଁର ତୁଣ୍ଡରୁ, ପରିବାର ଓ ପରିବେଶରୁ ତା'ର ଏକ ପୁରା ନିୟମସିଦ୍ଧ ବ୍ୟାକରଣ ଥାଏ । ସେ ଭାଷାର ଭାଷାବିଦ୍‌ମାନେ ସେଇ ବ୍ୟାକରଣକୁ ଆବିଷ୍କାର କରିବାର ଚେଷ୍ଟା କରୁଥାନ୍ତି । ବ୍ୟାକରଣର ନିୟମ ତିଆରି ହୁଏନାହିଁ। ମଣିଷର ଚେତନାରେ ଥିବା ଓ ପରଂପରାକ୍ରମେ ଚଳିଆସୁଥିବା ନିୟମକୁ ଅନ୍ୱେଷଣ କରାଯାଏ କେବଳ । ସେଥିପାଇଁ କୌଣସି ବ୍ୟାକରଣର ନିୟମ ସଂପୂର୍ଣ୍ଣ ନୁହେଁ। ଏକେ ତ ତାହା ବଦଳି ବଦଳି ଯାଉଥାଏ । ଦ୍ୱିତୀୟରେ ନିୟମରେ ଥିବା ଶୃଙ୍ଖଳାକୁ ଖୋଜିବା ପାଇଁ ଭାଷାବିଦ ମାନଙ୍କର ଚେଷ୍ଟା ଲାଗିରହିଥାଏ। ଏକ ଭାଷାଭାଷୀ ଗୋଷ୍ଠୀ ଯାହାକୁ ଠିକ୍ ବୋଲି ସ୍ଥିର କରନ୍ତି, ସେହି ସମୟ ପାଇଁ ତାହାହିଁ ନିୟମ । ଏହା ସମୟ କ୍ରମେ ବଦଳୁଥାଏ କାହିଁକିନା ବଦଳିବା ସବୁଭାଷାର ପ୍ରଧାନ ଧର୍ମ। ସେଥିପାଇଁ ଇତିହାସ ବହିର କେଉଁ ତାରିଖରୁ ଏ ଭାଷାକୁ କେତେହଜାର ଲୋକେ କହିଆସୁଛନ୍ତି, କେଉଁ ପ୍ରାଚୀନ ଭାଷାଠାରୁ ଏହା କେତେ ସ୍ୱତନ୍ତ୍ର, କେତେ ଆହରଣ କରିଛି କାହାଠାରୁ, ଦେଇଛି କେତେ ଆଧୁନିକ ଭାଷାବିଦ୍ ପାଇଁ ଏସବୁ ବିଚାର କରିବାର କଥା ନୁହେଁ। ଯଦି ଇତିହାସ ସେ କାମ କରୁଛି, କରୁଥାଉ ।

ଆମର କୋଶଲୀ ଭାଷା ଏ ସମୟର ଲୋକଙ୍କ ଭିତରେସରିଯାଉ, ସେଥିପାଇଁ ଏକ ପ୍ରଯତ୍ନ ଚାଲିଛି। ଆଜି ଆମେ ଇତିହାସ ଖୋଜୁଥିବା ବେଳେ ଆମର ବର୍ତ୍ତମାନ ମରିମରି ଯାଉଛି । ସେଥିପାଇଁ ଆମେ ଏକା ଦାୟୀ । ଆମେ ସ୍ଥିର କରି ନେଇଛୁଁ ସମ୍ୱିଧାନ ସ୍ୱୀକୃତ ଭାଷାରେ ହିଁ ପଢ଼ାହେବା ଉଚିତ୍। ବିଦ୍ୟାଳୟ ଗଲାଦିନ ହିଁ ପିଲାଟିକୁ ଆମେ କହୁଛୁଁ ଆଜିଯାଏ ଜାଣିଥିବା ସବୁଶବ୍ଦ, ତୁ କହୁଥିବା ଭାଷା

ଯାହାଶିଖୁଛୁ , ସବୁ ଭୁଲ । ଏବେ ବିଦ୍ୟାଳୟରେ ନୂଆଁ ଭାଷାଟିଏ ପଢ଼ାହେବ । ତାହା ହିଁ ହେବ ତୋ ଜୀବନର ଭାଷା । ତାହା ହିଁ ତୋତେ ବୃତ୍ତିଦେବ, ଶକ୍ତିଦେବ । ଅଥଚ ସେ ଭାଷା ଶିଖିବା ପାଇଁ ପିଲାଟିକୁ ଆମେ ଏକ ଭାଷିକ ପରିବେଶ ଦେଇପାରୁନାହୁଁ । ବିଦ୍ୟାଳୟର ଭାଷା, ବହି ଜଗତର ଭାଷା ଏବଂ ଘର ଓ ସମାଜର ଭାଷାର ଟଣା ଓଟରାରେ ପିଲାଟିର ଶୈଶବ ଜୀବନ ଦୁଃଖ ଆଉ ହତାଶରେ ଭରିଯାଉଛି । ପ୍ରଥମରୁ ପିଲାଟି ମୁହଁ ଫେରାଇନେଉଛି ବିଦ୍ୟାଳୟର ପାଠପଢ଼ାରୁ ବେଳେବେଳେ । ପୁଣି ବେଳେବେଳେ ଅନୁଭବ ବିନା ଅପରିଚିତ ଶବ୍ଦମାନଙ୍କୁ ମୁଖସ୍ଥ କରିଚାଲୁଛି ପିଲାଟି । ସାରାଜୀବନ ଯେତେବେଳେ ବି କିଛି କହିବାକୁ ପଡୁଛି, ଲେଖିବାକୁ ପଡୁଛି ଘରୁଆ ଭାଷା ଓ ବିଦ୍ୟାଳୟର ଭାଷାକୁ ନେଇ ଦୋଛକିରେ ଛିଡ଼ାହେଲା ପରି ପିଲାଟି ଦ୍ୱିଧାଗ୍ରସ୍ତ ହୋଇ ନିଜକୁ ଠିକ୍ ରୂପେ ପ୍ରକାଶ କରିପାରୁନାହିଁ । ମାନକ ଓଡ଼ିଆ ନାଁରେ ସମଗ୍ର ଓଡ଼ିଶାରେ ଉପକୂଳ ଅଞ୍ଚଳର ଓଡ଼ିଆ ଭାଷାକୁ ଲଦିଦେବା ଫଳରେ ଓଡ଼ିଶାର ପ୍ରାଥମିକ ଶିକ୍ଷା ହୋଇପଡ଼ିଛି ଏକ ବୋଝ । ପ୍ରାଥମିକ ଶିକ୍ଷା ଯେ ଆଞ୍ଚଳିକ ଭାଷାରେ ହେବାକଥା ଏକଥା ଆମେ ଜାଣିବି ଭୁଲିଯାଇଛୁଁ । କୌଣସି ଏକ ଆଞ୍ଚଳିକ ଭାଷା ସ୍ୱୀକୃତ ହେଉ ବା ନ ହେଉ ପ୍ରାଥମିକ ଶିକ୍ଷାର ଭାଷା ତାହା ହୋଇପାରିବ । ଏ ବ୍ୟବସ୍ଥା ଆମ ସମ୍ବିଧାନର ୩୫୦-B ଅନୁଚ୍ଛେଦରେ ରହିଛି । "It shall be the endeavour of every state and every local authority with in the State to provide adeqate facilities for instruction in the mother tongue at the Primary stage of education to children belonging to linguistic minor group, and the President may issue such directions to any state as he considers necessary or proper for securing the provision of such facilities."

କୋଶଲୀ ଭାଷାର ଏକ ସଂପୂର୍ଣ୍ଣ ବ୍ୟାକରଣ ଆବିଷ୍କାର କରିବାର ଚେଷ୍ଟା ପ୍ରାୟ ପନ୍ଦର କୋଡ଼ିଏ ବର୍ଷ ହେଲା ଚାଲିଆସୁଛି । ପ୍ରତିଟି ଭାଷାର ଏକ ନିଜସ୍ୱ ବ୍ୟାକରଣ ପରଂପରା ଥାଏ ଓ ତା'ର ଶୈଳୀ ବି ଥାଏ ସ୍ୱତନ୍ତ୍ର । ପ୍ରଥମେ କିଛି ବର୍ଷ

ଆମ ଭାଷାର ବ୍ୟାକରଣ ରଚନା ବେଳେ ସଂସ୍କୃତ ଓ ଓଡ଼ିଆ ବ୍ୟାକରଣ ଧାରାରେ ବିଚାର ଆରମ୍ଭ କରିଥିଲେ । ଓଡ଼ିଆରୁ ଏହାର ପାର୍ଥକ୍ୟ ପ୍ରଦର୍ଶନ ହିଁ ଏ ବ୍ୟାକରଣର ଏକତମ ଉଦ୍ଦେଶ୍ୟ ଥିଲା । ଆଉ ଏମିତି କେତେକ ବ୍ୟାକରଣବିଦ୍ ବି ଥିଲେ ଓଡ଼ିଆରୁ ଏହାର ପାର୍ଥକ୍ୟ ଯେତିକି ରହିଛି ସେତିକି ଆଲୋଚନା କରି ଅନ୍ୟସବୁ ଓଡ଼ିଆ ଅନୁରୂପ କହିବା ପାଇଁ ଚେଷ୍ଟାଶୀଳ ଥିଲେ । ଏବେ ଭାଷା ବିଜ୍ଞାନୀମାନେ ଆଧୁନିକ ଭାଷାବିଜ୍ଞାନର ପଦ୍ଧତିରେ ଏ ଭାଷାର ବର୍ଣ୍ଣନାତ୍ମକ ପଦ୍ଧତିରେ ବ୍ୟାକରଣ ରଚନାର ପ୍ରଚେଷ୍ଟା ଆରମ୍ଭ କଲେଣି । ଏମିତି ପ୍ରଚେଷ୍ଟାର ତଟସ୍ଥ ଫଳ ପାଇବା ପାଇଁ ଏବେ ଦେଖାଦେଇଛି ଦୁଇଟି ପ୍ରଧାନ ଅସୁବିଧା । ଏଇ ଶହେ ବର୍ଷର ଓଡ଼ିଆ ଲେଖାପଢ଼ା ଭିତରେ ଏ ଅଞ୍ଚଳର ଲୋକେ ଭୁଲି ଭୁଲି ଗଲେଣି ନିଜଭାଷାର ମୌଳିକ ରୂପ । ଏଣୁ ତଥ୍ୟ ଚୟନ ବେଳେ ପ୍ରକୃତ ଭାଷାଭାଷୀ ପରିଚିହ୍ନନରେ ଅସୁବିଧା ଦେଖାଦେଉଛି । ଦ୍ୱିତୀୟରେ ଆଜିକୁ ଶହେ ବର୍ଷ ତଳେ ଏ ଅଞ୍ଚଳର ଶତକଡ଼ା ଶହେ ଭାଗରୁ ଏକ ଦୁଇ ଭାଗ ଲୋକ ଓଡ଼ିଆ ଲେଖି ପଢ଼ି ପାରୁଥିଲେ । ତାହା ଏବେ ବଢ଼ି ବଢ଼ି ଶତକଡ଼ା ପଚାଶ ଭାଗ ଡେ଼ଇଁଲାଣି । ଭାଷା ଶିଖିବାର କଥା ଭାବିଲେ ଏହା ଏକାନ୍ତ ଠିକ୍ କଥା । କିନ୍ତୁ ନିଜ ମାତୃଭାଷାକୁ ଭୁଲି ଯାଇ ସେଠି ଅନ୍ୟ ଏକ ଭାଷା ପ୍ରତିସ୍ଥାପିତ କଲେ ଦୁଃଖ ଲାଗିବା ସ୍ୱାଭାବିକ । ବର୍ତ୍ତମାନ ବ୍ୟାକରଣ ରଚନା ବେଳେ ଶିକ୍ଷିତ ଓ ଅଶିକ୍ଷିତ କାହାର ଉଚ୍ଚାରଣ ପଦ୍ଧତି, ବାକ୍ୟବିନ୍ୟାସ ଓ ଶବ୍ଦରୂପମାନଙ୍କୁ ମାନକ କୁହାଯିବ ତାହାବି ହୋଇଉଠୁଛି ଅନ୍ୟ ଏକ ପ୍ରମୁଖ ପ୍ରଶ୍ନ । ପୁଣି ଆଞ୍ଚଳିକ ଓ ପ୍ରଜାତିକ ବିଭେଦ ତ ରହିଛି ।

ବ୍ୟାକରଣ ରଚନାର ଆଉଏକ ଅସୁବିଧା ହେଲା ପ୍ରକାଶନ ଓ ପ୍ରଚାର । ଏ ଲେଖକ ଆଧୁନିକ ଭାଷା ବିଜ୍ଞାନର ପଦ୍ଧତିରେ ଏକ ସଂପୂର୍ଣ୍ଣ ବ୍ୟାକରଣ ରଚନାର ଚେଷ୍ଟା କରିଆସୁଛି । ତେବେ ଏହାର ପ୍ରଚାର କିମ୍ବା ପ୍ରସାର ପାଇଁ ଏ ଅଞ୍ଚଳରେ ପତ୍ରିକାଟିଏ ନଥିବାରୁ ଚର୍ଚ୍ଚା ହୋଇ ପାରୁନି । ସ୍ୱର୍ଗତ ସତ୍ୟନାରାୟଣ ବହିଦାର, କବିରାଜ ପ୍ରୟାଗ ଦତ୍ତ ଯୋଷୀ, ଡ଼କ୍ଟର ବିଜୟକୃଷ୍ଣ ତ୍ରିପାଠୀ, ଡ଼କ୍ଟର ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଡକ୍ଟର ସନ୍ତୋଷ କୁମାର ରଥ, ଡ଼କ୍ଟର ଅଶୋକ କୁମାର ଦାସ, ଡ଼କ୍ଟର

ଦୋଳ ଗୋବିନ୍ଦ ବିଶି, ପ୍ରଫେସର ହୃଦମଣି ପ୍ରଧାନ ଏମିତି ଅନେକ ଲେଖକ କୋଶଳୀ ଭାଷାର ବ୍ୟାକରଣ ସମ୍ପର୍କରେ ଲେଖିଛନ୍ତି । ଏମିତିକି ଡ଼କ୍ଟର ପ୍ରଫୁଲ୍ଲ କୁମାର ତ୍ରିପାଠୀ ଓ ଡ଼କ୍ଟର ନୀଳମାଧବ ପାଣିଗ୍ରାହୀଙ୍କ ଯୁଗ୍ମ ପ୍ରଚେଷ୍ଟାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ବର୍ଣ୍ଣନାତ୍ମକ ସମ୍ବଲପୁରୀ କୋସଲୀ ବ୍ୟାକରଣଟିଏ ଏବେ ପ୍ରକାଶ ପାଇଛି । ଆମ ଏ ଭାଷାର ଉନ୍ନତି ପାଇଁ ସଙ୍ଘବଦ୍ଧ ଚେଷ୍ଟା ହୋଇନାହିଁ । କିନ୍ତୁ ଏ ଭାଷାର ସଂବୃଦ୍ଧି ପାଇଁ ସଙ୍ଘବଦ୍ଧ ଚେଷ୍ଟା ହେବ ଏମିତି ଦିନ ଆଉ ଦୂର ନାହିଁ ।

*(ସୁରତା, ୧୯୯୪)*

# କୋଶଲୀ ଭାଷା ଓ ଲିପି

ଇତିହାସ ଜାତି ଓ ଭାଷାକୁ ନେଇ କୋଶଳ ଅଞ୍ଚଳ ଏକ ଭିନ୍ନ ସାଂସ୍କୃତିକ ପରିଚିତି । ଇତିହାସର ପ୍ରାଚୀନ କାଳରୁ କୋଶଳ ଅଞ୍ଚଳ ନିଜର ସାଂସ୍କୃତିକ ଅସ୍ମିତା ରଖିଆସିଛି ଓ ରଖିପାରିଛି । ପ୍ରାୟ ହଜାରେ ବର୍ଷ ହେଲା ଅପର ସାଂସ୍କୃତିକ ପ୍ରଭାବରୁ ବଞ୍ଚେଇ ରଖିବା କମ୍ ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । କୋଶଲୀ ଭାଷା ଏକା ଏଇ ଜୀବନୀ ଶକ୍ତିର ମୂଳକାରଣ । ଆଜିବି ଭାଷାହିଁ ଆମର ସଂସ୍କୃତିକୁ ସାଂସ୍କୃତିକ ଆକ୍ରମଣରୁ ବଞ୍ଚାଇ ପାରିବ । ଏଥିପାଇଁ ଲୋଡ଼ା କେବଳ ଗୋଟି ଶ୍ରଦ୍ଧାଶୀଳ ଜିଭ, ଯିଏ ସ୍ୱାଭିମାନର ସହ ଏ ଭାଷାର ବ୍ୟବହାର ପାଇଁ ସମର୍ପିତ । ମାତୃଭାଷା ଯଦି ଗୋଟିଏ ଜିଭରୁ ହଜିଯାଏ, ସେ ବ୍ୟକ୍ତି ଓ ଜାତିର ଯେଉଁ କ୍ଷତି ହୁଏ ତାହା ଚିରକାଳ ଅପୂରଣୀୟ । ମାତୃଭାଷା ପ୍ରତି ଏକ ଅସ୍ୱୀକୃତ ମନୋବୃତ୍ତି ଥରେ ଯଦି ବ୍ୟକ୍ତି ହୃଦୟରେ ଦେଖାଦିଏ ସେ ବ୍ୟକ୍ତିଟି ବିଚାର, ଅବଧାରଣା ଓ ଆତ୍ମପ୍ରକାଶରେ ହୋଇପଡ଼େ ସଦାବେଳେ ଦ୍ୱିଧାଗ୍ରସ୍ତ । ନିଜକୁ ସଂପୂର୍ଣ୍ଣ ପ୍ରକାଶ କରିବା ପାଇଁ ଆଉ ସୁଯୋଗ ଆସେ ନାହିଁ । ଏକ ଅଦ୍‌ଭୁତ ହୀନମନ୍ୟତାରେ ଆକ୍ରାନ୍ତ ହୋଇପଡ଼େ ସାରା ଜୀବନ ।

ଭାଷା କଣ ? ଭାଷା ହେଉଛି ଗୋଟି ଅର୍ଥର ଜଗତକୁ ଧ୍ୱନିମାନଙ୍କ ଦେଇ ଚିହ୍ନିବାର ବ୍ୟବସ୍ଥା । ଏଇ ଶବ୍ଦ / ଧ୍ୱନିମାନଙ୍କର କିଛି ଅର୍ଥ ନଥାଏ । ଗୋଟିଏ ସଂସ୍କୃତି ତାର ସାଂସ୍କୃତିକ ପରମ୍ପରାରେ ଏଇ ଶବ୍ଦମାନଙ୍କୁ ଅର୍ଥ ଦିଏ । କେତେବେଳେ ଏଣୁ ଶବ୍ଦ ତା'ର ଅର୍ଥ ପରିଧି ବଢ଼େଇ ବଢ଼େଇ ଚାଲେ, କେବେ ପୁଣି ସଂକୁଚିତ କରିଚାଲେ, କେବେ ଏମିତି ବି ହୁଏ ଶବ୍ଦ ତା'ର ଅର୍ଥ ହଜେଇ ଦେଇ ନୂଆଁ ଅର୍ଥଟିଏ ବି ପାଇଯାଏ ।

ଭାଷା ସେଥିପାଇଁ କେବେବି ଜଣେ ଲୋକର ନୁହେଁ । ପୁରା ଗୋଟିଏ ସଂସ୍କୃତିର ସଂପତ୍ତି । ସଂସ୍କୃତି ହିଁ ଭାଷାକୁ ଗଢୁଥାଏ ଭାଙ୍ଗୁଥାଏ, ସବୁବେଳେ ସବୁକାଳେ । ତେବେ ଭାଷା ସଂସ୍କୃତିର କ୍ରୀଡ଼ନକ ନୁହେଁ, ପ୍ରକାଶର ମାଧ୍ୟମ ଭାଷା । ଏହା ସଂସ୍କୃତିକୁ ବଂଚେଇ ରଖେ, ସଂଚିତ କରି ରଖେ । ଯେଉଁ ଜାତିର ଭାଷା ନାହିଁ ତାର ସଂସ୍କୃତି ହିଁ ନାହିଁ, ରହିପାରିବ ନାହିଁ । ସଂସ୍କୃତିକୁ ବୁଝିବାପାଇଁ ଭାଷା ଏକା ତାର ଉପାଦାନ, ପୁଣି ଭାଷା ହିଁ ସଂସ୍କୃତିର କାରଣ ।

ଆମ ସଂସ୍କୃତିର କଥା ଆମେ ଯେତିକି ଜାଣିଛୁ, ଜାଣିଛୁ କେମିତି ? କେଉଁ କାଳରୁ ଘଟିଥିବା ଏକ ଘଟଣା ହେଉ କି ଆମ ସାମାଜିକ ଜୀବନର ପରମ୍ପରା ହେଉ ଆମ ମାନସରେ ରହେ କେମିତି ? ଆମର ଜ୍ଞାନ, ବିଷ୍ଣରଭାବ, ଅଭାବ, ଯଦି ଭାଷାରେ ରୂପାନ୍ତରିତ ହେବନାହିଁ ମଣିଷ ଜାତିର ସ୍ମୃତିରେ ରହିବ ନାହିଁ । ସେଥିପାଇଁ ଭାଷାର ଆଲୋକରେ ହିଁ ଆମେ ଏ ଜଗତ ଓ ଜୀବନକୁ ଦେଖିପାରୁ । ଯଦି କେବେ ଆମର ଭାଷା ମରିଯାଏ ତେବେ ତା ସହ ସଂସ୍କୃତିର ବି ମୃତ୍ୟୁ ଘଟିବ । ଭାଷା ରହିଲେ ସଂସ୍କୃତି ରହିବ ।

କୋଶଲୀ ଭାଷା କଣ ? କେତେ ହଜାର ବର୍ଷ ହେଲା ଏ ଅଞ୍ଚଳର ଲୋକଜୀବନ ଏ ଅଞ୍ଚଳର ଲୋକ ପ୍ରକୃତି ସହ, ମଣିଷ ସହ ଲଢ଼ି ଯେଉଁ ଅନୁଭବ ସବୁ ପାଇଲେ ତାର ଶବ୍ଦରୂପ ଆମର ଏଇ ଭାଷା । ଗୋଟିଏ ଗୋଟିଏ ଶବ୍ଦ ଭିତରେ ଏଣୁ ଛପି ରହିଛି କେତେ ସ୍ମୃତି, କେତେ ଇତିହାସ । ଗୋଟିଏ ଶବ୍ଦ ହଜିଗଲେ ଆମେ କେବଳ ଗୋଟିଏ ଶବ୍ଦ ହଜେଇ ଦେବାନାହିଁ ତା ସହ ହଜେଇ ଦେବା ସଂସ୍କୃତିର ଏକ ଅମୂଲ୍ୟ ସ୍ମୃତି । ଶବ୍ଦକୁ ବ୍ରହ୍ମ ବୋଲି ବୋଧହୁଏ ସେଥିପାଇଁ କହନ୍ତି, କେଉଁଦିନ ହଠାତ୍ ଏକ ଅର୍ଥ ସହ ଜୋଡ଼ି ହୋଇ ଧ୍ୱନି ସମୂହ ଶବ୍ଦରୂପ ନେଲା ତାହା ରହିଗଲା ଚିରଦିନ ଏକ ଜାତିର ସ୍ମୃତି ହୋଇ । ବ୍ରହ୍ମ ହୋଇଗଲା, ଅମର ହୋଇଗଲା । ଶବ୍ଦ ଓ ଅର୍ଥର ଏଇ ଯୁଗନଦ୍ଧ ରୂପ ଈଶ୍ୱର ପାର୍ବତୀ ହୋଇ ମଣିଷର ମୁଖରେ ପୂଜା ପାଇଲା ।

ଗୋଟିଏ ଭାଷାର ମୂଳ ଜୀବନ ହେଉଛି ତାର ଶବ୍ଦ । ଶବ୍ଦମାନଙ୍କୁ ନେଇ ଗୋଟିଏ ଭାଷା ବଂଚେ । ଶବ୍ଦ ଏକା ଭାଷାର କ୍ଷୁଦ୍ରତମ ଅର୍ଥପୂର୍ଣ୍ଣ ଏକକ । ସେଥିପାଇଁ

ଗୋଟିଏ ଶବ୍ଦକୁ ଠିକ୍ ଭାବରେ ବୁଝି ବ୍ୟବହାର କଲେ "କାମଧୁକ୍" ହୁଏ ବୋଲି ପ୍ରାଚୀନ କାଳରେ ଋଷିମାନେ ମନେ କରୁଥିଲେ । ଗୋଟିଏ ଶବ୍ଦକୁ ଠିକ୍‌ଭାବେ ବୁଝିବା କହିଲେ ସେ ଶବ୍ଦର ଅର୍ଥ ଜାଣିବା ନୁହେଁ, ଏକ ବୃହତ୍ତମ ରଚନାର ଅଂଶ ରୂପେ ତାର ବ୍ୟବହାର ମଧ ଜାଣିବାକୁ ପଡ଼ିବ । ସବୁ ଶବ୍ଦ ସହ ସବୁ ଶବ୍ଦ ଯୋଡ଼ି ହୋଇ ପାରନ୍ତି ନାହିଁ । ପୁଣି ସବୁବେଳେ ଶବ୍ଦର ଅର୍ଥ ସମାନ ରହେ ନାହିଁ । ସେଥିପାଇଁ ପ୍ରତିଟି ଭାଷାରେ ଶବ୍ଦକୁ ବୁଝିବାପାଇଁ ତିନୋଟି କଥା ଲକ୍ଷ୍ୟ କରିବାର ଅଛି । ପ୍ରଥମତଃ ଶବ୍ଦର ଅର୍ଥ, ଆଭିଧାନିକ ହେଉ ବା ଗୁଢ଼ାର୍ଥ ହେଉ, ତାପରେ ବାକ୍ୟରେ ଶବ୍ଦର ଅର୍ଥବୋଧ ଓ ନିୟନ୍ତ୍ରଣ ପରିଧି, ପୁଣି ଶେଷରେ ଅପର ଶବ୍ଦ ମାନଙ୍କ ସହ ମିଶି ସୃଷ୍ଟି କରୁଥିବା ନୂଆଁ ନୂଆଁ ଅର୍ଥର ସମ୍ଭାବନା ।

କୋଶଲୀ ଭାଷାର ହଜାର ହଜାର ଶବ୍ଦ ଅପର ଭାରତୀୟ ଭାଷାଠାରୁ ଅଲଗା । ଅର୍ଥ ଓ ପ୍ରକୃତି ଦୃଷ୍ଟିରୁ ଏତେ ଅଲଗା ଯେ ଏ ଭାଷାର ଶବ୍ଦକୁ ଅପର ଭାଷାଭାଷୀ ଲୋକେ ଆମ୍ବ କହିଲେ ଲିମ୍ବ ବୁଝିବାର ବି ଉଦାହରଣ ରହିଛି । ଏ ଶବ୍ଦ ମାନଙ୍କୁ ନେଇ କଣ କରାଯାଇପାରେ ? ପ୍ରାଚୀନ କାଳରେ ଓଡ଼ିଆ ବିଦ୍ୱାନ୍‌ମାନେ ମନେକଲେ "ଛାଡ଼ ଏହା ଏକ ଅସଭ୍ୟ କୁତ୍ସିତ ଓ ବିଶୃଙ୍ଖଳିତ ଶବ୍ଦ । ଲେଖାପଢ଼ା ଜାଣିଥିବା ଲୋକ ଏହାକୁ ବ୍ୟବହାର କରିବା କଥା ନୁହେଁ ।" ଯେଉଁମାନେ ଲେଖା ପଢ଼ା ଜାଣିଛନ୍ତି, ନିଜ ରଚନାରେଏହାକୁ ବ୍ୟବହାର କରିବା ଏକ ଭାଷିକ ପାପ ବୋଲି ମନେକଲେ । ଏମିତି ବିତିଗଲା ପ୍ରାୟ ଗୋଟିଏ ଶତାବ୍ଦୀ । କାହାରି କଲମରୁ ସିନା ଝରି ଆସିଲା ନାହିଁ ଏଇ ଶବ୍ଦ ସବୁ, ତେବେ ବି ଲୋକଜୀବନ ଭିତରେ ପ୍ରତିଷ୍ଠିତ ରହିଲା ।

ଏବେ କିଛି ଲୋକ କହୁଛନ୍ତି କୋଶଲୀ ଭାଷାରେ ଅନେକ ସୁନ୍ଦର ଓ ଅର୍ଥପୂର୍ଣ୍ଣ ଶବ୍ଦ ରହିଛି । ଯେଉଁମାନେ ପ୍ରଥମେ କହୁଥିଲେ ଏ ଭାଷାର ଏ ଶବ୍ଦସବୁ ବିକୃତ ଓ କୁତ୍ସିତ ସେମାନେ ହିଁ ଏବେ କହୁଛନ୍ତି କୋଶଲୀ ଭାଷାର କେତୋଟି ସୁନ୍ଦର ଶବ୍ଦକୁ ଗ୍ରହଣ କରିନେଲେ ଓଡ଼ିଆ ଭାଷା ହେବ ସଂବୃଦ୍ଧ । ଏବେ ଜଣା ପଡ଼ିଲାଣି ଓଡ଼ିଆ ଭାଷାରେ ଅନେକ ଭାବ ପ୍ରକାଶ ପାଇଁ ଶବ୍ଦର ଅଭାବ ରହିଛି । ସେମିତି କେତୋଟି

ଅସୁବିଧା କୋଶଲୀ ଭାଷା ଦେଇ ଦୂର ହୋଇପାରିବ । ଏ ଶବ୍ଦମାନଙ୍କୁ ଖୋଜି ଓଡ଼ିଆରେ ବ୍ୟବହାର କଲେ ଓଡ଼ିଆ ଓ କୋଶଲୀ ଭାଷାର ପାର୍ଥକ୍ୟ ଆସ୍ତେ ଆସ୍ତେ କମିଯିବ । ସେ ଯାହା ବି ହେଉ ଏଇ ଶହେବର୍ଷ ଭିତରେ ଗୋଟିଏ କଥା ଜଣା ପଡ଼ିଲାଣି ଓଡ଼ିଆ ଭାଷାରେ ବି ଅଭାବ ରହିଛି ଏବଂ ତାହା ଦୂର କରିବା ପାଇଁ କୋଶଲୀ ଭାଷାର ସାହାଯ୍ୟ ନିଆଯାଇପାରେ ।

ଗୋଟିଏ ଭାଷା ଆଉ ଏକ ଭାଷାଠୁଁ ଶବ୍ଦ ଗ୍ରହଣ କରିବା ଆଦୌ ନୂଆଁ କଥା ନୁହେଁ । ତେବେ ଶବ୍ଦ ଗ୍ରହଣରେ ଯେତିକି ଶବ୍ଦ ଗ୍ରହଣ କରାହେବ, ସେତିକି ହିଁ ସମାନତା ରହିବ । ସେ ଶବ୍ଦ ସବୁର ମୂଳ ଭାଷାରେ ଯେଉଁ ପ୍ରଜନନ ଶକ୍ତି ରୂପେ, ନୂଆଁ ନୂଆଁ ଅର୍ଥ ଗଢ଼ିବାର ସାମର୍ଥ୍ୟ ଥାଏ ତାହା ଆହୃତ ଭାଷାରେ ସମ୍ଭବ ହେବ ନାହିଁ । ମୂଳ ଭାଷାରେ ଗୋଟିଏ ଶବ୍ଦ ଯେଉଁ ଅର୍ଥ ଓ ଭାବର ଜଗତ ସୃଷ୍ଟି କରିପାରେ, ତାହା ଅନ୍ୟ କୌଣସି ଭାଷାରେ ସମ୍ଭବ ନୁହେଁ, ଆହୃତ ଭାଷା ତାଙ୍କୁ ଆହରଣ କରିପାରେ ନାହିଁ ସେଥିପାଇଁ ମୂଳଭାଷା ଓ ତାର ଭାଷାଭାଷୀ ଲୋକଥିବା ଯାଏଁ ଏ ଶବ୍ଦର ଅର୍ଥ ପରିଧି ତାଙ୍କ ପାଇଁ ଚିର ନୂତନ ହୋଇ ରହିଥାଏ । କୋଶଲୀ ଭାଷାର କେତୋଟି ଶବ୍ଦକୁ ନେଇ ଓଡ଼ିଆରେ ବ୍ୟବହାର କଲେ କୋଶଲୀ ଭାଷାର ଅସ୍ମିତା ଶେଷ ହୋଇଯିବ ବୋଲି ଯେଉଁମାନେ ଭାବୁଛନ୍ତି ତାହା ଏକାନ୍ତ ଭୁଲ୍ । କୋଶଲୀ ଭାଷାର କେତୋଟି ଶବ୍ଦ ଯଦି ଓଡ଼ିଆରେ ମିଶେ ଏ ଭାଷାର ଅସ୍ମିତାରେ କିଛି ଉଣା ହେବନାହିଁ ।

କୋଶଲୀ ଭାଷାର ଆଲୋଚନା ଭିତରେ ବି ଆମେ ବଡ଼ ଏକ ଭୁଲ କରୁ । ଆମେ ମନେ କରୁଁ, କୋଶଲୀ ଭାଷାରେ ଖାଲି କେତୋଟି ନୂଆଁ ନୂଆଁ ଶବ୍ଦ ଅଛି, ବାକି ସବୁ ଓଡ଼ିଆ ଭଳି । କୋଶଲୀ ଭାଷାକୁ ବାହ୍ୟତଃ ଲକ୍ଷ୍ୟକଲେ ଏକଥା ସତ ପରି ମନେହୁଏ । କାହିଁକିନା ଏତେବର୍ଷର ଓଡ଼ିଆ ପଢ଼ାଶୁଣା ଭିତରେ ଆମର କହିବାର ଓ ଲେଖିବାର ଶୈଳୀ ବି ଓଡ଼ିଆ ପରି ହୋଇଯାଇଛି । ଆଖିଦୃଶିଆ ଯେଉଁ ଜିନିଷଟି ଉଭୟ ଭାଷାରେ ଭିନ୍ନ ତାହା ହେଉଛି କେତୋଟି ଶବ୍ଦ । ଏଣୁ କିଛି ଲୋକ ଭାବିବା ସ୍ୱାଭାବିକ କୋଶଲୀ ଭାଷା କହିଲେ କେତୋଟି ଶବ୍ଦ, ତାକୁ ଓଡ଼ିଆରେ ମିଶେଇ ଦେଲେ ହେଲା ।

ଏ ଆଲୋଚନାରେ ଆମେ ସେ କଥା ଆଲୋଚନା କରିବା ନାହିଁ । କେତେକ ଆଲୋଚକ ଯେମିତି କହନ୍ତି 'ଓଡ଼ିଆ'ରେ 'ରାତି' 'କୋଶଲୀ'ରେ 'ରାଏତ୍' ହୁଏ । ଏହା ଏକ ଶବ୍ଦ ବଦଳେଇବା ନିୟମରେ ବନ୍ଧା । ଏମିତି କେତୋଟି ନିୟମ ଶିଖିଗଲେ ଜଣେ ଓଡ଼ିଆ ଭାଷାଭାଷୀ କୋଶଲୀ ଭାଷା ବୁଝି ପାରିବ, ପଢ଼ିପାରିବ ଦରକାର ପଡ଼ିଲେ ଲେଖି ବି ପାରିବ (ଡ଼: ବିଜୟ କୁମାର ମହାପାତ୍ର ୧୯୮୬) । ଏମିତି ହେଲେତ ଏଇ ଶହେ ବର୍ଷ ଭିତରେ ଲକ୍ଷାଧିକ ଓଡ଼ିଆ ଲୋକ କୋଶଲୀ ଭାଷା ଲେଖି ପଢ଼ି ଜାଣିଥାନ୍ତେ । ତେବେ ମୋ ଜାଣିବାରେ ଖୁବ୍ କମ୍ ଓଡ଼ିଆ ଲୋକ ଠିକରୂପେ କୋଶଲୀ ଭାଷା କହିପାରନ୍ତି ।

କୋଶଲୀ ଭାଷାର ମୂଳ କଣ, ଏହାର ମୌଳିକତା କେଉଁଠି ? ମୌଳିକ ଶବ୍ଦ, ମୌଳିକ ଧ୍ୱନିସୂତ୍ରର ଶୃଙ୍ଖଳା, ମୂଳ ବାକ୍ୟ ବିନ୍ୟାସର ନିୟମ ଏବଂ ମୌଳିକ ଶବ୍ଦ ଉତ୍ପାଦନ ସୂତ୍ର ପ୍ରଥମେ ଆମକୁ ଖୋଜିବାକୁ ପଡ଼ିବ । ଏ କାମଟି ଜଣେ ଦୁଇଜଣଙ୍କର ନୁହେଁ କିମ୍ୱା ଦିନେ ଦୁଇଦ୍ଦିନର ନୁହେଁ । ଆମେ ଯାହା କହୁଛୁଁ ତା ଭିତରେ ଛପି ରହିଛି ଏ ସମସ୍ତ ମୌଳିକ ଶୃଙ୍ଖଳା, ତାକୁହିଁ ଖୋଜିବାକୁ ପଡ଼ିବ । ପୁଣି ଖୋଜିବାକୁ ପଡ଼ିବ ଆମର ବିଶାଳ ଭୂଖଣ୍ଡରେ, ଗାଁ ଗହଳିରେ, ସହର ବଜାରରେ ଭିନ୍ନ ଭିନ୍ନ ଜୀବିକା ଓ ଭାବର ଜଗତରେ ବଂଚୁଥିବା ଲକ୍ଷ ଲକ୍ଷ ଲୋକଙ୍କର ଭିତରେ ଭାଷାର ଯେଉଁ ସମାନ ସୌତ୍ରିକ ଶୃଙ୍ଖଳା ରହିଛି ।

ଆଉ ଏକ କଥା ଆଲୋଚନା ନ କଲେ ଏ ଆଲୋଚନା ଅସଂପୂର୍ଣ୍ଣ ମନେହେବ । ଆମ ଭାଷାରେ ଲେଖନ ପଠନର ପରଂପରା କାହିଁକି ସୃଷ୍ଟି ହେଲାନାହିଁ । ଚୈତନ୍ୟ ଦାସ, ଯୋଗୀ ଦାସ, ଭୀମ ଭୋଇ, କୃଷ୍ଣ କର, ଏମିତିକି ଗଙ୍ଗାଧର ମେହେର ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ କାହିଁକି ଲେଖିଲେ ? ଏଇ ସମସ୍ତ କବିଙ୍କ ପାଇଁ ଭିନ୍ନ ଭିନ୍ନ କାରଣ ଥାଇପାରେ । ତେବେ ଗୋଟିଏ ସମାନ କାରଣ ହେଉଛି ସେତେବେଳେ ଓଡ଼ିଆ ଲିପି ଜାଣିଥିବା ଲୋକ ଏକା ଆମ ଏ ଅଂଚଳରେ ଲେଖିବା ଓ ପଢ଼ିବା ଜାଣିଥିଲେ । ଆଉ ଯେଉଁ ବୃହତ୍ତମ ଜନତା ଲେଖିବା କିମ୍ୱା ପଢ଼ିବା ଜାଣିନଥିଲେ, ସେମାନେ ଥିଲେ କେବଳ ଶ୍ରୋତା । ତାଙ୍କ ପାଇଁ ଯେଉଁ ଲିପିରେ

ଲେଖିଲେ ଫରକ୍ କଣ ? ଓଡ଼ିଆ ଲିପିରେ କିଏ କାହିଁକି ଲେଖିଲେ ତା'ର କାରଣ ବି ଖୋଜା ଯାଇପାରେ । ଧରନ୍ତୁ ଗଙ୍ଗାଧର ମେହେରଙ୍କ କଥା ।

ପ୍ରାୟ ଶହେ ବର୍ଷ ତଳେ ଗଙ୍ଗଧର ମେହେର ଯେତେବେଳେ ଓଡ଼ିଆରେ ଲେଖାପଢ଼ା ଆରମ୍ଭ କଲେ, ସବୁଦିନ ପାଇଁ ଆମ ସମସ୍ତଙ୍କ ତରଫରୁ ଯେମିତି ଏକ ଚୁକ୍ତି ହେଲା, ଏ ଅଂଚଳରେ ଏହାପରେ ଯିଏବି ଲେଖିବେ ଓଡ଼ିଆରେ ହିଁ ଲେଖିବେ । ଏ ଚୁକ୍ତି ଆଜିଯାଏ କାୟମ ରହିଛି । ଆମର କବି ଓ ଲେଖକ ମାନେ ଆଜି ବି ତାକୁ ମାନି ଚଳୁଛନ୍ତି । ଗଙ୍ଗାଧର ମେହେର ଏ ନିଷ୍ପତ୍ତି କାହିଁକି ନେଲେ ତାହା ତାଙ୍କୁ ହିଁ ଜଣା । କାହିଁକି ନା ଗଙ୍ଗାଧରଙ୍କ ଘରେ ସମସ୍ତେ କଥାବାର୍ତ୍ତା ହେଉଥିଲେ ଭୁଲିଆ ଭାଷାରେ । କୋର୍ଟ କଚେରୀରେ ଚଳୁଥିଲା ହିନ୍ଦୀ । ତେବେ ଓଡ଼ିଆ ଭାଷାରେ ସେ କାହିଁକି ଲେଖୁଥିଲେ ସେକଥା ତାଙ୍କୁ ପଚାରି ହେବନାହିଁ , ହେଲେ ଆମକୁ ସବୁବେଳେ ତାଙ୍କ ତରଫରୁ ଉତ୍ତର ଦେବାକୁ ପଡୁଥିବ, ଯେତେବେଳେ ବି ଆମେ କୋଶଲୀ ଭାଷାର ଲେଖାପଢ଼ାର ପରଂପରା ଆଲୋଚନା କରିବା ।

ଶହେ ବର୍ଷ ତଳେ ଆମ ଅଂଚଳରେ ସ୍କୁଲ ଥିଲା ଖୁବ୍ କମ୍ । ସ୍କୁଲ ଯିବାପାଇଁ ପିଲା ମାନେ ଡ଼ରୁଥିଲେ । ତେବେ ଇଂରେଜ ଶାସନ ସହ ସଂପୃକ୍ତି ରୁ ଜନଜୀବନରେ ଲେଖାପଢ଼ାର ଧାରାଟିଏ ସୃଷ୍ଟି ହୋଇ ଯାଇଥିଲା । ଠିକ୍ ସେତିକି ବେଳେ ନଅଙ୍କ ଦୁର୍ଭିକ୍ଷ । ତାହା ପରେପରେ ବଂଚିବା ପାଇଁ ଓ ସମାଜରୁ ବିତାଡ଼ିତ ହୋଇ ଉପକୂଳ ଓଡ଼ିଶାରୁ ହଜାର ହଜାର ଲୋକ ଏ ଅଂଚଳକୁ ଚଲିଆସିଲେ । ଏମାନଙ୍କ ମଧ୍ୟରୁ ଅନେକେ ଲେଖାପଢ଼ା ଜାଣିଥିଲେ । ସେମାନଙ୍କ ଜୀବିକା ପାଇଁ ହେଉକି ଏ ଅଂଚଳର ଲୋକଙ୍କର ପୋଥିପୁରାଣ ପଢ଼ିବାର ଇଚ୍ଛା ପାଇଁ ହେଉ ଏଠି ଲେଖାପଢ଼ାର ନୂଆଁ ଏକ ବଜାର ଖୋଲିଗଲା, ତାର ନାଁ ଚଟଶାଳୀ । ସମସ୍ତ ବାପା ମାଁ ଚହିଁଲେ ତାଙ୍କ ପୁଅ ଲେଖିପଢ଼ି ଜାଣୁ, ମଲା ବେଳେ ଭାଗବତ ଶୁଣାଉ । ନୂଆଁ ଏକ ଶାସନ ବ୍ୟବସ୍ଥାରେ ନିଜକୁ ବଂଚେଇ ବଂଚିପାରୁ । ପୁଣି ଅବଧାନ ମାନେ ଚହିଁଲେ ତାଙ୍କର ଜୀବିକା ପାଇଁ ବେଶିବେଶି ଚଟଶାଳୀ ଖୋଲୁ ।

ଗଙ୍ଗାଧର ମେହେର ସ୍କୁଲକୁ ଗଲେ ଷୋହଳ ବର୍ଷ ବୟସରେ । କାମ

ଧାମ ଜାଣିଥିବା ପୁଅଟିଏ ସ୍କୁଲ ଯାଉ ବୋଲି ବାପା ଚଇତନ ମେହେର ଉହୁଁନଥିଲେ । ସେତେବେଳେ ଗଙ୍ଗାଧର ବାହା ହୋଇ ସାରି ଥିଲେ । ଘରେ ଲେଖାପଢ଼ା ବି ଶିଖି ସାରିଥିଲେ । ତେବେ କିଏ ଜଣେ ସ୍କୁଲରେ ଗଙ୍ଗାଧରଙ୍କ ନାଁ ଲେଖେଇ ଦେଲା ବୋଲି ସରକାରଙ୍କ ଭୟରେ ଚଇତନ ମେହେର ରାଜିହେଲେ.ଓ ଗଙ୍ଗାଧର ସ୍କୁଲକୁ ଗଲେ । ସ୍କୁଲରେ ପଢ଼ାହେଉଥିବା ଅଧିକାଂଶ ବହି ସଂସ୍କୃତର । ଓଡ଼ିଆ ବହି ବି ଖଣ୍ଡେ ଦି ଖଣ୍ଡ ଥିଲା । ଗଙ୍ଗାଧର ମନୋନିବେଶ କରି ପାଠ ପଢ଼ିଲେ ଜଣେ ଆଗ୍ରହୀ ଛାତ୍ର ଭାବରେ । ବରପାଲିକୁ ସେତେବେଳେ ଶିକ୍ଷକ ହୋଇ ଆସିଲେ କଟକର ପଣ୍ଡିତ ଘନଶ୍ୟାମ ମିଶ୍ର । ସେ ହିଁ ଓଡ଼ିଆରେ ଲେଖିବା ପାଇଁ ଗଙ୍ଗାଧରଙ୍କୁ ଉତ୍ସାହିତ କଲେ । ତାପରେ ରାଧାନାଥ ଙ୍କ ସାବସୀ ଓ ସ୍ୱୀକୃତି ଗଙ୍ଗାଧରଙ୍କୁ ଓଡ଼ିଆରେ ଲେଖିବା ପାଇଁ ପ୍ରେରଣା ଦେଲେ । ଯଦିଓ ଗଙ୍ଗାଧର ହିନ୍ଦୀ ବି ଜାଣିଥିଲେ ।

ଓଡ଼ିଆ କହୁଥିବା ସମସ୍ତ ଅଂଚଳ ଗୋଟିଏ ଶାସନର ଅଧିନରେ ରହୁ , ଏ ସ୍ଲୋଗାନ ସେତେବେଳେ ଆରମ୍ଭ ହୋଇଯାଇଥିଲା । ଉପକୂଳ ଓଡ଼ିଶାରୁ ଆସିଥିବା ଲୋକମାନେ ଏବଂ ଏ ଅଂଚଳର ନୂଆଁ ଓଡ଼ିଆ ପଢ଼ିଥିବା ବାବୁମାନେ ଏ ଅଂଚଳର ନେତା ହେଲେ । ସାଧାରଣ ଲୋକଙ୍କ ଭାଷା ଓ ଶାସନକୁ ନେଇ ଚିନ୍ତା ହିଁ ନ ଥିଲା । ଚୋର ବସିଥାଉ କି ସାହୁକାର, ଯେମିତି ଘୋଡ଼ାଟି ଜାଣିପାରେ ନା ସେମିତି ସାଧାରଣ ଜନତା ଏ ନିଷ୍ପତ୍ତିରେ ତଟସ୍ଥ ଥିଲେ । ଲେଖିପଢ଼ି ଜାଣିଥିବା ଲୋକ ଏ ଅଂଚଳରେ ଶତକଡ଼ା ୧ କିମ୍ବା ୨ ଭାଗ, ବାକି ସମସ୍ତେ ମୁକ ଜନତା । ଏଇ ଜଣେ ଦୁଇଜଣ ଲେଖାପଢ଼ା ଜାଣିଥିବା ଲୋକ ସାହିତ୍ୟ ବଜାରର ବିକ୍ରେତା ଓ କ୍ରେତା । ଓଡ଼ିଆ ଭାଷାରେ କାବ୍ୟ ଲେଖିଲେ, କବିତା ଲେଖିଲେ, ଶିମଲା ଗଲେ ବଡ଼ଲାଟଙ୍କୁ ଭେଟିଲେ, ଏ ଅଂଚଳର ଭାଷା ଓଡ଼ିଆ ବୋଲି ତଥାକଥିତ ଆନ୍ଦୋଳନ କଲେ । ସେ ଦିନଠୁ ଏ ଅଂଚଳର ସାଧାରଣ ଜନତାର ଭାଷା ଅସ୍ୱୀକୃତ ରହିଗଲା ଏବଂ ତାହା ଅଶିକ୍ଷିତମାନଙ୍କର ଭାଷା ହୋଇରହିଗଲା । ବହିର ଓ ସଭ୍ୟ ଚତୁର ଲୋକଙ୍କର ଭାଷା ହେଲା ଓଡ଼ିଆ ।

ଆଜିକୁ ଶହେ ବର୍ଷତଳେ ଓଡ଼ିଶା ବୋଲି ପ୍ରଦେଶଟିଏ ନଥିଲା । ଓଡ଼ିଆ ଭାଷାକୁ ନେଇ କେଉଁଠି କେଉଁଠି ଲୋକେ ଏକ ପ୍ରଦେଶ ଗଢ଼ିବାର କଥା ଭାବୁଥିଲେ ।

ମଧୁବାବୁ ଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତଙ୍କର ସତରେ ପ୍ରଦେଶ ଗଢ଼ିହେବ ଏ ବିଶ୍ୱାସ ବି ନ ଥିଲା । ପ୍ରଦେଶ କଥାଟିକୁ ହସିବା ଲୋକ ଅଧିକ ଥିଲେ, କିଛି ଲୋକ ଥିଲେ ତଟସ୍ଥ । ଆଜିକୁ ଶହେତିରିଶ ବର୍ଷ ତଳେ ଓଡ଼ିଆ ଭାଷା ବୋଲି ଗୋଟିଏ ଭାଷା ସ୍କୁଲରେ ପଢ଼ାହେବ କି ନା ଏ ସଂପର୍କରେ ସଭାସମିତି ହେଉଥିଲା । କିଛି ଲୋକ ଓଡ଼ିଆ ଏକ ସ୍ୱତନ୍ତ ଭାଷା ନୁହେଁ ବୋଲି ବହି ଲେଖୁଥିଲେ, କହୁଥିଲେ ଓଡ଼ିଆ ପୁଣି ଗୋଟିଏ କି ଭାଷା । ଓଡ଼ିଆରେ କେତେଖଣ୍ଡ ବହି ଲେଖାହୋଇଛି ହଣ୍ଟର ସାହେବ ଗୋଟିଏ ତାଲିକା ପ୍ରସ୍ତୁତ କଲେ । ତାଳପତ୍ର ପୋଥି ଆଉ ଛପାବହି ସବୁ ମିଶାଇ କଷ୍ଟେମଷ୍ଟେ ଶହେ ଡେଇଁଲା । ବଂଗାଳୀମାନେ କହିଲେ ନାଟକ କେତେଟା ଅଛି ? କେତେଟା ଅଛି ଉପନ୍ୟାସ ? ଏସବୁ ହାତ ଗଣତି ଏକା ଥିଲା କିମ୍ୱା ଆଦୌ ନଥିଲା । ଆଜିପରି କ୍ଷୁଦ୍ରଗଳ୍ପ ନ ଥିଲା । ଭ୍ରମଣ କାହାଣୀ ନ ଥିଲା, କି ନ ଥିଲା ଗଦା ଗଦା ଆଲୋଚନା ବହି । ଶିକ୍ଷିତ ଲୋକମାନେ ଓଡ଼ିଆ ପଢ଼ିବାକୁ ନାକ ଟେକୁ ଥିଲେ । ହିନ୍ଦୀ, ବଂଗଳା ନହେଲେ ଇଂରାଜୀ ଭାଷାକୁ ଲେଖାପଢ଼ାର ଭାଷା ବୋଲି ସମସ୍ତେ ଭାବି ନେଇଥିଲେ । ଶିକ୍ଷିତ ଲୋକଙ୍କ ପାଇଁ ଓଡ଼ିଆରେ ଲେଖିବା ଥିଲା ଲଜ୍ୟାଜନକ ବ୍ୟାପାର ।

ଶହେ ବର୍ଷରେ ବଦଳି ଯାଇଛି ଦୃଶ୍ୟପଟ । ଭାରତ ସମ୍ୱିଧାନର ସ୍ୱୀକୃତି ପାଇଛି ଓଡ଼ିଆ ଭାଷା । ଗୋଟିଏ ରାଜ୍ୟର ସରକାରୀ ଭାଷା ହୋଇଛି । ଓଡ଼ିଆରେ ଲେଖି ଭାରତର ଶ୍ରେଷ୍ଠ ସାହିତ୍ୟିକ ସମ୍ମାନ ପାଇଲେଣି ପାଞ୍ଚ ଛଅ ଜଣ କବି ଲେଖକ । ଭାରତ କାହିଁକି ପୃଥିବୀରେ ଓଡ଼ିଆ ଭାଷା ସ୍ୱୀକୃତ ହେଲାଣି । ମଣିଷ ଜାତିର ଇତିହାସରେ ଶହେବର୍ଷ ଗୋଟିଏ ନିମିଷ, ଗୋଟିଏ ଆଖିର ପଲକ, ଏଇ ଆସିଗଲା, ଏଇ ସରିଗଲା । ଇତିହାସର ହାତୀ ସୁନାର କଳସ ଧରି ବୁଲୁଥାଏ । ଯେ ଚେଷ୍ଟା କରେ ଯେଉଁ ଜାତି ଓ ଅଞ୍ଚଳ, ଭାଷା ଓ ସଂସ୍କୃତି, ସଂବୃଦ୍ଧି ପାଇଁ ଲଢ଼େ, ତାର ମୁଣ୍ଡରେ ଢ଼ଳିଯାଏ କଳସ । କିଏ କହିପାରିବ ଏ ଅଞ୍ଚଳର ସଂସ୍କୃତି ଆଉ ଭାଷା ଶହେବର୍ଷ ପରେ କଣ ହେବ ? କିଏ କହିପାରେ ଶହେବର୍ଷରେ ବଦଳିଯିବ ପୃଷ୍ଠପଟ, ନୂଆଁ ଇତିହାସ ଗଢ଼ାହେବ ।

## ଦୁଇ

ସମୟ ଆସିଲା, ଶବ୍ଦମାନଙ୍କୁ ଲେଖି ରଖିଲା ମଣିଷ । ଲେଖି ରଖିଲେ ଆଉ କ୍ଷୟ ନାହିଁ । ଅକ୍ଷୟ ହୋଇ ରହିବ ବୋଲି ନା ରଖିଲା ଅକ୍ଷର । ତାହା ଆଉ କ୍ଷୟ ଯିବ ନାହିଁ, ଯୁଗେଯୁଗେ ରହିବ, ପୁରୁଷ ପୁରୁଷକୁ ଏଇ ଭାବ ଓ ଶବ୍ଦ ସଂଚରିଯିବ । ଯେଉଁ ଜାତିର ସଂସ୍କୃତିରେ ଲେଖିବାର ବ୍ୟବସ୍ଥା ଯେତେଶୀଘ୍ର ଆବିଷ୍କୃତ ହେଲା ସେ ଜାତି ସେତେଶୀଘ୍ର ସଭ୍ୟତାର ଦ୍ଵିତୀୟ ପାହାଚରେ ପହଞ୍ଚିଲା । ଲିପି ହେଉଛି ସଭ୍ୟତାର ଏବଂ ଭାଷାର ଦ୍ଵିତୀୟ ପାହାଚ । ଯେଉଁଠି ଭାବ ନଥାଏ, କହିବା ଓ ଶୁଣିବାର ଲୋକ ନଥାନ୍ତି । ଲିପି ସେଠି ଭାବ ଓ ଅର୍ଥକୁ ଡାକି ଆଣେ ଜଣେ ଦ୍ରଷ୍ଟା ନିକଟକୁ । ଲିପିକୁ ଦେଖି ଲୋକଟି ଭାବ ନିକଟରେ ପହଞ୍ଚିଯାଏ । ଅର୍ଥର ଜଗତରେ ପହଞ୍ଚିଯାଏ । ଏମିତିକି କହିବା ଲୋକଙ୍କର ନିକଟରେ ବି ପହଞ୍ଚିଯାଏ ।

କୌଣସି ଲିପି ଭାଷା ନୁହେଁ । ଲିପି ଏକ ଚିହ୍ନ । ଏକ ମୃତ କଙ୍କଡ଼ା । ଭାଷା ଗୋଟିଏ ଚଳନ୍ତି ଜୀବ । ନିଜେ ନିଜେ ବଢୁଥିବା ଗୋଟିଏ ଧାରା । ସେଥିପାଇଁ କୌଣସି ଲିପି ଗୋଟିଏ ଭାଷା କୁ ଧରି ରଖିପାରେ ନାହିଁ । ଭାଷା ବଦଳିବା ସହ ଲିପି ବି ବଦଳୁ ଥାଏ । କିଛି ନ ହେଲେବି ନୂଆଁ ଚିହ୍ନ, ନୂଆଁ ଅକ୍ଷର, ଗୋଟିଏ ଲିପିର ପଦ୍ଧତିରେ ମିଶୁଥାଏ । ସେଥିପାଇଁ କୌଣସି ଭାଷାର ଲିପି ସେ ଭାଷା କହୁଥିବା ଲୋକଙ୍କ ଭିତରେ ଏକ ଚୁକ୍ତିନାମା ଯେ ଏଇ ଚିହ୍ନ ଟି ଏଇ ଧ୍ଵନି, ଏମିତି ଏହାର ଉଚ୍ଚାରଣ ।

କୋଶଲୀ ଭାଷାରେ ଲେଖା ହେବା ଅଳ୍ପ ଦିନର କଥା । ତା'ଆଗରୁ ବେଶି ନ ହେଲେବି ପ୍ରାୟ ହଜାରେ ବର୍ଷ ପୂର୍ବରୁ ଏ ଭାଷାରେ ଲୋକେ କଥାବାର୍ତ୍ତା କରୁଥିଲେ । ଯେତେବେଳେ ବଂଗଳା, ଓଡ଼ିଆ, ଅହମିଆଁ ପରସ୍ପର ଠାରୁ ଦୂରେଇ ଯାଉଥିଲେ । ସେତେବେଳେ କୋଶଲୀ ଭାଷା ବି ଏମାନଙ୍କ ଠାରୁ ଭିନ୍ନ ହୋଇ ଚାଲିଥିଲା । ବିଦ୍ୟାଳୟରେ ପଢ଼ାହେବା ପାଇଁ, ଛାପାଖାନା ପାଇଁ, ଆମର ଦୁଃଖ ସୁଖକୁ ଲେଖି ରଖିବା ପାଇଁ ଲୋଡ଼ା ପଡ଼ିଲା ଗୋଟିଏ ଲେଖନ ପଦ୍ଧତି । ଏ ଲେଖନ ପଦ୍ଧତି କୋଶଲୀ ପାଇଁ କ'ଣ ହେବ । ସେତେବେଳେ ଭାବିବା ପାଇଁ ସମୟ ନ

ଥିଲା । ଆଜିକୁ ଶହେବର୍ଷ  କିମ୍ବା ତାର ପଚାଶ ବର୍ଷ ଆଗରୁ  ଏ ଅଂଚଳର ଯେଉଁମାନେ ଶିକ୍ଷିତ ·ହେଲେ ବିଦ୍ୟାଳୟରେ ଲେଖି ଜାଣିଲେ ତାଙ୍କର ପ୍ରଥମ ପରିଚିତି ହେଲା ଓଡ଼ିଆ ଲିପି ସହ । ସେତେବେଳେ ଯିଏ କୋଶଲୀ ଭାଷାରେ ଲେଖିବାର କଥା ଭାବିଲେ ଓଡ଼ିଆ ଲିପି ହିଁ ତାଙ୍କ ମନକୁ ପ୍ରଥମେ ଆସିଲା । ଫଳରେ ଏ ଭାଷାର ଅନେକ ଶବ୍ଦ ଲେଖିଲା ବେଳକୁ ବଦଳି ବି ଗଲା । ଓଡ଼ିଆ ଲିପି ହେଉଛି ଓଡ଼ିଆ ଭାଷାର ଧ୍ୱନି ବ୍ୟବସ୍ଥାର ଚିହ୍ନ । ଅନ୍ୟ ଭାଷା ସେ ଲିପିରେ ଲେଖିଲେ ଲେଖିବା ଓ ପଢ଼ିବା ଉଭୟ କାମ କଠିନ ମନେ ହେବା ସ୍ୱାଭାବିକ । ଯଦି କିଏ ଅକ୍ଷ ପରିବର୍ତ୍ତନ କରି ଲେଖିବା କଥା  ପ୍ରସ୍ତାବ ଦିଏ ଓଡ଼ିଆ ଅକ୍ଷର ପଢ଼ିବା ଅଭ୍ୟାସରୁ ତାହା ଆମକୁ ଅଡୁଆ ଲାଗିବ ନିଶ୍ଚୟ । ପ୍ରଥମରୁ ଓଡ଼ିଆ ଅକ୍ଷର ବ୍ୟବସ୍ଥାକୁ କାମଚଳା ଲିପି ଭାବରେ ବ୍ୟବହାର କରିବା ଫଳରେ ଆମର ଏଇ ଅସୁବିଧା ।

ଲିପି କୌଣସି ଭାଷାର ଜୀବନ ନୁହେଁ, ଖାଲି ଧ୍ୱନି ଚିହ୍ନ । ପୃଥିବୀରେ ଅନେକ ପ୍ରମୁଖ ଭାଷା ରହିଛି ଯାର ନିଜସ୍ୱ ଲିପି ନାହିଁ । ଏମିତିବି ଇଂରାଜୀ , ଫ୍ରେଞ୍ଚ ପରି ପ୍ରସିଦ୍ଧ ଭାଷା ଓ ୟୁରୋପର ଅନ୍ୟ ଭାଷା ସମୂହ ଲିଖିତ ହୁଏ ଗୋଟିଏ ଲିପି ରୋମାନ ଲିପିରେ । ଭାଷା ପାଇଁ ଏଣୁ ନୂଆଁ ଲିପି ଗଢ଼ିବା ସବୁବେଳେ ଦରକାର ନୁହେଁ । ଆସନ୍ତୁ ପ୍ରଥମେ ଓଡ଼ିଆ ଲିପିକୁ ଦେଖିବା । ଓଡ଼ିଆ ଭାଷାର ଏଇ ଅକ୍ଷର ସବୁ ମୂଳରୁ ଏମିତି ନଥିଲା । ତାଳପତ୍ରରେ ଲେଖାହେଲା ବେଳେ ବିଭିନ୍ନ ଲୋକ ବିଭିନ୍ନ ଅଞ୍ଚଳରେ ଭିନ୍ନଭିନ୍ନ ରୂପେ ଲେଖୁଥିଲେ । ମୁଦ୍ରଣ ପାଇଁ ଯେତେବେଳେ ପଥର ଛାଞ୍ଚ ସବୁ ତିଆରି ହେଲା ସେତେବେଳେ ଜଣା ପଡ଼ିଲା ଓଡ଼ିଆ ଲିପିରେ ଅନେକ ବିସଙ୍ଗତି ରହିଛି । ସେତେବେଳେ କିଛି ପରିବର୍ତ୍ତନ କରାହେଲା ଓ ପରେ କିଛି ପରିବର୍ତ୍ତନ ଫଳରେ ଆଜିର ଓଡ଼ିଆ ଲିପି ବିକଶିତ ହେଲା ।

କୋଶଲୀ ଭାଷାର ଲିପି କଣ ଓ କେମିତି ହେବ ବିଚାର କରିବା ଆଗରୁ ପ୍ରଥମେ ଦେଖିବା ଏବେ ଆମେ ଯେଉଁ ଓଡ଼ିଆ ଲିପିରେ ଲେଖୁଛେଁ ସେଥିରେ ସୁବିଧା କ'ଣ, ଅସୁବିଧା କ'ଣ ? ପୁଣି ଦେଖିବା କୋଶଲି ଭାଷାକୁ ଏ ଲିପିରେ ଲେଖିବା କେତେଦୂର ସମୀଚିନ ହେବ ?

ଓଡ଼ିଆ ଲିପିରେ ଅଛି ମୂଳ ଅକ୍ଷର ଏବଂ ସେ ଅକ୍ଷରର ଏକ ଅନ୍ୟଚିହ୍ନ ଯାହାକୁ ଆମେ କହୁଁ ସେ ଅକ୍ଷରର ମାତ୍ରା । ଯେମିତି ଇ ପାଇଁ " ି" (ଟୋପିଟିଏ) କ ଅକ୍ଷର ପାଇଁ " ୍" ଏଇ ମାତ୍ରା ସବୁ ମୂଳ ଅକ୍ଷରର ତଳେ ଉପରେ ଆଗରେ ପଛରେ ଲାଗି ପାରନ୍ତି । ପଢ଼ିଲାବେଳେ ଆମେ କେବଳ ଅକ୍ଷରକୁ ନୁହେଁ ତାର ଋରିପଟକୁ ଦେଖି ଧ୍ୱନି ଉଚ୍ଚାରଣ କରୁ । ଯଦି କିଛି ଚିହ୍ନ ଲାଗିନଥାଏ ଆମେ ମନେକରୁ ସେଥିରେ "ଅ" ଲାଗିଛି । କାହିଁକି ନା ଓଡ଼ିଆରେ "ଅ" ଅକ୍ଷରର ଚିହ୍ନ ବା ମାତ୍ରା ହିଁ ନାହିଁ । ଓଡ଼ିଆ ଅକ୍ଷରରେ ଅ ରୁ କ୍ଷ ଯାଏଁ ଗୋଟିଏ ଲେଖାପଢ଼ା ବ୍ୟବସ୍ଥା ପାଇଁ କିଛି ଚିହ୍ନ ନଥିଲେ ବି ଅ ଚିହ୍ନ ଲାଗିଛି ଭାବି ପଢ଼ାଯାଏ । ଫଳରେ କିଛି ଚିହ୍ନ ନଥିବା ଅକ୍ଷର ପାଇଁ ଏକ ଚିହ୍ନ ଦେଇ ପରିଚିତ କରାଯାଏ । ସେ ଚିହ୍ନଟି ହେଲା "୍" (ହଳନ୍ତ) । ଏମିତି କରିବାର କାରଣ ହେଲା ଓଡ଼ିଆ ଭାଷାର ଶବ୍ଦ ଭଣ୍ଡାରରେ ଖୁବ୍‌କମ୍ ହଳନ୍ତ ଲାଗିଥିବା ଶବ୍ଦ ଥିଲା । । ପରେ ସଂସ୍କୃତ ଶବ୍ଦ ଆହରଣ ବେଳେ ଦେଖାଗଲା ହଳନ୍ତ ଦେଇ ଲେଖିବା କଷ୍ଟକର ହୋଇ ପଡୁଛି । ଏଣୁ ଏକ ଯୁକ୍ତାକ୍ଷର ବ୍ୟବସ୍ଥାର ଆରମ୍ଭ ଘଟିଲା । ଯେତିକି ସଂଯୁକ୍ତ ଧ୍ୱନି ଓଡ଼ିଆରେ ପ୍ରଚଳିତ ସେତିକି ନୂଆଁ ଯୁକ୍ତାକ୍ଷର ସୃଷ୍ଟି କରାହେଲା । ଏହା ହେଉଛି ଓଡ଼ିଆ ଲିପିର ସୃଷ୍ଟି କାହାଣୀ ।

ଆଜି କୌଣସି ଭାଷାକୁ ଓଡ଼ିଆ ଲିପିରେ ଲେଖିଲାବେଳେ ଅନେକ ଅକ୍ଷରରେ ହଳନ୍ତ ଦେବାକୁ ପଡୁଛି । ହଳନ୍ତ ନଦେଲେ ଏମିତି ଏକ ଶବ୍ଦ ଆଖିକୁ ଆସୁଛି ଯାହା ସହ ପାଠକ ଅପରିଚିତ । ଯେମିତି ***ହର୍ବରେଁ କରି ନର୍ଧ୍ଗଲେ ସର୍ଲିପଦ୍ବ*** (ହର୍‌ବରେଇ କରି ନରଧ୍ ଗଲେ ସର୍‌ଲିପଡ୍‌ବ) ଏମିତି ଦେଖିଲେ ଏତେଗୁଡ଼ିଏ ଯୁକ୍ତାକ୍ଷର ସୃଷ୍ଟିହେବ ଯାହା କୌଣସି ଏକ ଲିପି ପାଇଁ ସୁବିଧାଜନକ ନୁହେଁ । ଓଡ଼ିଆରେ ଯେତିକି ଅକ୍ଷର ଅଛି ତାର ଉପରେ, ତଳେ, ଆଗରେ, ପଛରେ ସ୍ୱର ଓ ବ୍ୟଞ୍ଜନ ମାତ୍ରା ଲାଗି ଯୁକ୍ତାକ୍ଷର ସୃଷ୍ଟିହେଲେ ଆଜିର କମ୍ପୁଟର ଯୁଗରେ ଛାପିବାପାଇଁ ଅସୁବିଧା ହୋଇ ନପାରେ । କିନ୍ତୁ ଲେଖିବା ଓ ପଢ଼ିବାବେଳେ ଅସୁବିଧା ଆସିପାରେ । ତେବେ ଗୋଟିଏ କଥା କୋଶଲିର କେଉଁ କେଉଁ ଯୁକ୍ତାକ୍ଷର ରହିଛି ଓ ତାର ଆବଶ୍ୟକତା କେତେ ଅଧିକ, ଏ ସମ୍ପର୍କରେଏକ ତାଲିକା ପ୍ରସ୍ତୁତ କରାଯାଇପାରେ ।

କୋଶଲୀ ଭାଷାକୁ ଓଡ଼ିଆ ଲିପିରେ ଲେଖିଲେ ଏବଂ ହଳନ୍ତ ଲାଗିବା ସ୍ଥାନରେ ତାହା ନ ହେଲେ କେଉଁଠି ଅକାରନ୍ତ ହେବ ଓ କେଉଁଠି ବ୍ୟଞ୍ଜନାନ୍ତକ ହେବ ଆଦୌ ଜଣାପଡ଼ିବ ନାହିଁ । କୌଣସି ଲିପିର ବୁଇଟି ଧ୍ୱନି ଗୋଟିଏ ଚିହ୍ନ ମାଧ୍ୟମରେ ପ୍ରକାଶିତ ହେଲେ ପଠନରେ କେତେ ଅସୁବିଧା ହୁଏ ସବୁ ଇଂରାଜୀ ପାଠକ ଜାଣନ୍ତି । ଠିକ୍ ଯେମିତି ଦେବନାଗରୀ ଲିପିରେ ଲେଖାହେଉଥିବା ହିନ୍ଦୀ ଭାଷାରେ କେଉଁଠି ସ୍ୱରାନ୍ତ ହେବ ଓ କେଉଁଠି ବ୍ୟଞ୍ଜନାନ୍ତ ହେବ ସେ ଭାଷାଭାଷୀ ଜାଣିଥାଏ । ଫଳରେ ଆଦୌ ଅସୁବିଧା ହୁଏନାହିଁ । ଓଡ଼ିଆ ଲିପିରେ ଲେଖି କେଉଁଠି ହଳନ୍ତ ଲାଗିବ ଯଦି ଏ ଅଞ୍ଚଳର ପାଠକ ଶ୍ରେଣୀ ଠଉରାଇ ପାରିଲେ ତେବେ କିଛି ଅସୁବିଧା ହେବ ନାହିଁ । ଆମକୁ ସ୍ଥିର କରିବାକୁ ହେବ ଅପର ଭାଷାଭାଷୀ ପାଠକ ମାନଙ୍କ ପାଇଁ ଆମ ଭାଷାର ଧ୍ୱନି ଶୃଙ୍ଖଳା । ପ୍ରଥମେ ଦେଖିବା କେଉଁଶବ୍ଦ ସବୁ ଲେଖିବା ଓ ପଢ଼ିବାବେଳେ ଅସୁବିଧା ହେଉଛି । ଧରନ୍ତୁ ଶବଦ । ଜଣେ ଏହାକୁ ପଢ଼ିପାରିବ ଶବ୍‌ଦ ଏବଂ ଶବଦ୍ । "ବ" ଓ "ଦ" କୁ ଯୋଡ଼ି "ବ୍ଦ" ଯୁକ୍ତାକ୍ଷରଟିଏ ଓଡ଼ିଆରେ ରହିଛି । ତେଣୁ ଆମେ ଭାବୁଛୁଁ ଶବ୍ଦ ଲେଖିବା ପାଇଁ ଓଡ଼ିଆରେ ସୁବିଧା ବ୍ୟବସ୍ଥା ରହିଛି । ଓଡ଼ିଆ ଭାଷାରେ ଯେଉଁ ଯେଉଁ ଅକ୍ଷର ସଂଯୁକ୍ତ ରୂପେ ବ୍ୟବହୃତ ହୁଅନ୍ତି ହଳନ୍ତ ବ୍ୟବହାର ନ କରିବା ପାଇଁ ଓ ସଂଯୁକ୍ତପଣ ଦର୍ଶାଇବାପାଇଁ ଓଡ଼ିଆ ଲିପିରେ ଏମିତି ଯୁକ୍ତାକ୍ଷର ସବୁ ରହିଛି । ତାର ଏକ ଦୀର୍ଘ ତାଲିକା ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧରେ ରହିଛି । ଗୋଟିଏ ଭାଷାର ଲିପି ବ୍ୟବସ୍ଥାରେ ଏତେଗୁଡ଼ିଏ ଯୁକ୍ତାକ୍ଷର ରହିବା ଖୁବ୍ ଭଲ କଥା ନୁହେଁ । ଆଜିର କମ୍ପ୍ୟୁଟର ଯୁଗରେ ଲୋକେ ମନେ କରୁଛନ୍ତି କମ୍ ଅକ୍ଷର ଏବଂ ତାହା ଅକ୍ଷର ପରେ ଅକ୍ଷର ଲେଖିଚାଲିଲେ ଲିପି ଶିଖିବା ଓ ଶିଖାଇବା ପାଇଁ ସହଜ ବ୍ୟବସ୍ଥା ହେବ । ଆମକୁ ଓଡ଼ିଆଲିପିର ଯୁକ୍ତାକ୍ଷର ଏବଂ ଏବେ ଆମେ ବ୍ୟବହାର କରୁଥିବା ହଳନ୍ତ କୋଶଲୀ ଭାଷା ଲେଖିଲାବେଳେ ଉଭୟକୁ ବ୍ୟବସ୍ଥାକୁ ଛାଡ଼ିବାକୁ ପଡ଼ିବ । ତେବେ କେବଳ ଅଭ୍ୟାସ ବଶତଃ ପଢ଼ିହେବ କି ପଢ଼ିବାପାଇଁ ଏକ ନିୟମ ତିଆରି କରିବାକୁ ପଡ଼ିବ ଏଇଟା ଗୁରୁତ୍ୱପୂର୍ଣ୍ଣ । ଯେମିତି ଆମେ କହୁଛୁଁ ତାକୁ ଲେଖି ରଖିବା ପାଇଁ ତେବେ କେଉଁ ଲିପି ଅଧିକ ବ୍ୟବହାର ଉପଯୋଗୀ ହେବ ଏଇ କଥା ସହ ଜଡ଼ିତ ।

ପିଲାବେଳୁ ଆମେ ଶିଖିଥିବା ଓଡ଼ିଆ ଲିପିର ଗୋଟିଏ ବଡ଼ଗୁଣ ହେଲା ଏହାର ସବୁ ଅକ୍ଷର ଯଦି ହଲନ୍ତ ଲାଗିନଥାଏ ଗୋଟିଏ ଗୋଟିଏ ସିଲାବୁଲ । ଧରନ୍ତୁ 'ମାଟି' ଏଠି ମାଁ' ଗୋଟଏ ସିଲାବୁଲ 'ଟି' ବି ଗୋଟିଏ ସିଲାବୁଲ କିନ୍ତୁ କୋସଲି ଭାଷାର 'ମାଏଟ୍' ଆଖିଦେଖିବାରେ ତିନୋଟି ଅକ୍ଷର ତେବେ ସିଲାବୁଲ ଭାବରେ ଦୁଇଟି 'ମା'ଓ ଏଟ । କଥାଟା ବୁଝିବାପାଇଁ ଗୋଟିଏ ଇଂରାଜୀ ଶବ୍ଦର ଉଦାହରଣ ନେବା । 'Beautiful'ଏଠି ଅକ୍ଷର ଅଛି ନଅଟି କିନ୍ତୁ ସିଲାବୁଲ ସଂଖ୍ୟା ତିନି ବିଉ-ଟି-ଫୁଲ । ଇଂରାଜୀ ଜାଣିଥିବା ଲୋକ ଲିପି ଓ ଭାଷା ଭିତରେ ଏ ସଂପର୍କକୁ ଜାଣିଥାନ୍ତି ଏବଂ କେମିତି ଉଚ୍ଚାରଣ କରିବାକୁ ହେବ କେଉଁଠି ରହିବାକୁ ହେବ ଏହାବି ଭାଷା ଶିକ୍ଷାର ଅଂଗ ଥାଏ । ଇଂରାଜୀ ଭାଷା ଯାହାର ମାତୃଭାଷା ନୁହେଁ ଭାଷା ଶିଖିବା ସହ ଏଇ ଲିପି ଓ ଧ୍ୱନିର ସଂପର୍କ ମଧ ଶିଖିଥାନ୍ତି । ଓଡ଼ିଆ ଭାଷାରେ ଏ ବ୍ୟବସ୍ଥା ନ ଥିବାରୁ ଓଡ଼ିଆ ଲିପି ବ୍ୟବହାର କରି କୋସଲି ଭାଷା ଲେଖିବା ବେଳେ ଏକଥା ଆମକୁ ଅଡୁଆ ଲାଗୁଛି ।

କୋଶଲୀ ଭାଷାରେ ହଲନ୍ତ ଲାଗିଥିବା ଅକ୍ଷର ଶବ୍ଦର ଆରମ୍ଭରେ ରହିପାରେ ନାହିଁ । ଆମେ ସେଥିପାଇଁ 'ସ୍କୁଲ'କୁ 'ଇସ୍କୁଲ'କହୁ ପୁଣି ଯଦି ଦ୍ୱିତୀୟ ଅକ୍ଷର ସ୍ୱରବର୍ଣ୍ଣ ହୋଇ ନଥିବ ସେଠି ହଲନ୍ତ ନିଶ୍ଚୟ ଲାଗିବ ଏକଥା ବୁଝିବା ପାଇଁ ଗୋଟିଏ ଉଦାହରଣ ନେବା । ଧରନ୍ତୁ 'ଗୁରସ' ଶବ୍ଦକୁ ଦୁଇ ପ୍ରକାରରେ ପଢ଼ିହେବ । ଗୁର-ଅସ୍ ଏବଂ ଗୁ-ରସ୍ । ସେମିତି ଦେଖିଲେ ଦୁଇଟି ଠିକ୍ ପରି ଲାଗୁଛି । ହେଲେ କୋଶଲୀ ଭାଷାଭାଷୀ ଲୋକ ଠିକ ଜାଣିପାରନ୍ତି ଆମେ କ'ଣ କହୁଁ, ସେମାନେ ହିଁ ଠିକ କରିପାରନ୍ତି ଗୋଟିଏ ନୂଆଁ ସିଲାବୁଲ କେଉଁଠୁ ଆରମ୍ଭ ହେଉଛି ଓ ପ୍ରଥମଟି କେଉଁଠି ସରୁଛି । ଯେମିତି କହିଲା ବେଳେ ଆମେ ସବୁ ଶବ୍ଦ ଛଡ଼ା ଛଡ଼ା କହି ନ ଥାଉଁ କିମ୍ୱା ବାକ୍ୟ ଶେଷରେ ପୂର୍ଣ୍ଣଚ୍ଛେଦ କହିବା ଦରକାର ପଡ଼େନାହିଁ । ପ୍ରତ୍ୟେକ ଭାଷାଭାଷୀ ଏହା ଜାଣିଥାନ୍ତି କେଉଁଠି ଶବ୍ଦ ସରେ କେଉଁଠି ବାକ୍ୟ ସରେ । ଠିକ୍ ସେମିତି ଆମେ ସମସ୍ତେ ଜାଣିଛୁଁ ଆମ ଶବ୍ଦମାନଙ୍କରେ ସିଲାବୁଲ କେଉଁଠୁ ଆରମ୍ଭ ହୁଏ କେଉଁଠି ସରେ । କେବଳ କଥା ହେଲା ସିଲାବୁଲରେ ଥିବା ଧ୍ୱନିମାନଙ୍କୁ ଗୋଟିଏ ଲିପିରେ ଲେଖିବା କଥା । ଏ

କଥା ଠିକ୍ କରିବା ଆଗରୁ ଏ ଭାଷାର ମୌଳିକ ପ୍ରକୃତିକୁ ଆମକୁ ଆଉଟିକିଏ ବୁଝିବାକୁ ପଡ଼ିବ ଗଭୀର ଭାବରେ । ପ୍ରଥମେ ଜାଣିବାକୁ ପଡ଼ିବ ଆମ ଭାଷାରେ ଆମେ କେତେ ପ୍ରକାର ସିଲାବଲ ତିଆରି କରୁଁ । ଗୋଟିଏ ସିଲାବୁଲରେ କେତୋଟି ପର୍ଯ୍ୟନ୍ତ ଧ୍ୱନି ରହିପାରେ ? ଆମର କେତୋଟି ଧ୍ୱନି ଏବଂ ସେଗୁଡ଼ିକ କିଏ କାହା ସହ ରହିପାରେ ? ଏକଥା ପରେ ସିନା ସ୍ଥିର କରିହେବ କୋଶଲୀ ଭାଷା ପାଇଁ ଓଡ଼ିଆ ଲିପି ଠିକ୍ ହେବ ନା ଦେବନାଗରୀ ଲିପି ?

ଭାଷାତତ୍ତ୍ୱର କଥା ଦେଖିଲେ କୋଶଲି ଭାଷାପାଇଁ ଅଧିକ ସୁବିଧା ଜନକ ନାଗରୀ ଲିପି । କାହିଁକିନା ନାଗରୀ ଲିପି ସହ ପରିଚିତ ସବୁଲୋକ ହିନ୍ଦୀ ଭାଷା ମାଧ୍ୟମରେ ଏବଂ ହିନ୍ଦୀ ଭାଷାର ଧ୍ୱନି ଶୃଙ୍ଖଳା ମାଧ୍ୟମରେ ବ୍ୟଞ୍ଜନାନ୍ତକ ଉଚ୍ଚାରଣ ସହ ସୁପରିଚିତ । ହିନ୍ଦୀ ଶବ୍ଦର ବ୍ୟଞ୍ଜନାନ୍ତକତା କୋଶଲୀ ସହ ଅନେକ ଦୃଷ୍ଟିରୁ ସମାନ । ଯଦିଆମେ ଓଡ଼ିଆ ଲିପିରେ ଲେଖିବା ଓଡ଼ିଆ ଭାଷା ପଢ଼ିବାର ଅଭ୍ୟାସରୁ ହଳନ୍ତ ନ ଦେଲେ କୋଶଲୀକୁ ଠିକ୍ ଭାବରେ ପଢ଼ିପରିବା ନାହିଁ । କିନ୍ତୁ ନାଗରୀ ଲିପିରେ ଦେଖିଲେ ପଢ଼ିବାରେ କୌଣସି ଅସୁବିଧା ହେବ ନାହିଁ । କୋସଲି ଭାଷାର ସିଲାବୁଲ ଗଠନ ଓ ତା'ର ବିତରଣ ଏମିତି ଯେ ନାଗରୀ ଲିପିର ଖୁବ୍ କମ ଯୁକ୍ତାକ୍ଷର ଗ୍ରହଣ କରି ସହଜ ସରଳ ଗୋଟିଏ ଲିପିର କଥା, ଚିନ୍ତା କରି ହେବ । ଏ ନୂଆଁ ଲିପି ନାଗରୀ ଲିପିକୁ ନେଇ ତ ନିଶ୍ଚୟ ଆରମ୍ଭ ହେବ ତେବେ ନାଗରୀ ଲିପିର ସବୁ ଅକ୍ଷର ଆବଶ୍ୟକ ପଡ଼ିବ ନାହିଁ । କେଉଁ ଅକ୍ଷର ରହିବ କେଉଁ ଅକ୍ଷର ରହିବ ନାହିଁ ତାର ଲେଖନ ବ୍ୟବସ୍ଥା କେମିତି ହେବ ତାହାତ ପରବର୍ତ୍ତୀ କଥା ଏବେ ଆସନ୍ତୁ ପ୍ରଥମେ ଦେଖିବା ନାଗରୀ ଲିପିରେ ଲେଖିଲେ କ'ଣ କ'ଣ ଅସୁବିଧା ହେବ । ପ୍ରଥମ କଥା ନାଗରୀ ଲିପିରେ ଲେଖିଲେ ପଢ଼ିବ କିଏ, ଆମ ଏ ଅଞ୍ଚଳରେ ଯେଉଁ ଶତକଡ଼ା ଚାଳିଶ ବୟାଳିଶ ପ୍ରତିଶତ ଲୋକ ଲେଖିପଢ଼ି ଜାଣନ୍ତି ? ଏହାର ଉତ୍ତର ଆଦୌ ସହଜ ନୁହେଁ । କାହିଁକି ନା ଲେଖି ପଢ଼ି ଜାଣିଲେବି ବହୁ ଲୋକଙ୍କର ମାନସିକ ପ୍ରସ୍ତୁତି ହିଁ ନାହିଁ ନାଗରୀ ଲିପିରେ ଲେଖିବା ପାଇଁ କିମ୍ବା ପଢ଼ିବା ପାଇଁ । ତେବେ ଗୋଟିଏ କଥା ସତ, ଆସନ୍ତା ସମୟରେ ଭାରତର ଯେଉଁ ପିଲା ବି ଲେଖିପଢ଼ି

ଜାଣିବେ ତା'ର ନିଶ୍ଚୟ ପରିଚିତି ଘଟିବ ନାଗରୀ ଲିପି ସହ । ରାଜ ଭାଷା ଭାବରେ ହିନ୍ଦୀର ବିକାଶ ଆସ୍ତେ ଆସ୍ତେ ବଢ଼ି ଚାଲିଛି । ଆମେ ଚାହୁଁ ବା ନ ଚାହୁଁ ଆସନ୍ତା କୋଡ଼ିଏ ପଚିଶ ବର୍ଷ ଭିତରେ ସମଗ୍ର ଭାରତର ଜନମୁଖର ପରିଚିତ ଭାଷା ହେବାକୁ ଯାଉଛି ହିନ୍ଦୀ । ଟିଭି ଏବଂ ସିନେମା ମାଧ୍ୟମରେ ଶିକ୍ଷିତ ଏବଂ ଅଶିକ୍ଷିତ ଉଭୟ ଜନତାଙ୍କର ନିକଟବର୍ତ୍ତୀ ହେଉଛି ହିନ୍ଦୀ । ଆଉ ଏକ କଥା ଓଡ଼ିଶାର ମାଧ୍ୟମିକ ସ୍କୁଲରେ/ହିନ୍ଦୀ ବାଧ୍ୟତା ମୂଳକ ହେଲା ପରେ ନାଗରୀ ଲିପି ସହ ପରିଚିତ ପ୍ରତିଟି ଶିକ୍ଷିତ ବ୍ୟକ୍ତି ପାଇଁ ଅନିବାର୍ଯ୍ୟ । ନାଗରୀ ଲିପିରେ କମ୍ପ୍ୟୁଟର ବ୍ୟବହାର ପାଇଁ ସୁବିଧା ରହିଛି । ଓଡ଼ିଶା ବାହାରେ ଥିବା ଲକ୍ଷାଧିକ କୋଶଲୀ ଭାଷାଭାଷୀଙ୍କୁ ଆପଣେଇବା ପାଇଁ ଏ ଲିପି ହେବ ଆଉ ଏକ ମାଧ୍ୟମ । ତେବେ ପ୍ରସଙ୍ଗରେ ଅଧିକରୁ ଅଧିକ ଚର୍ଚ୍ଚା ହେଲେ ହିଁ ଆମର ଲିପି ସମସ୍ୟାର ସମାଧାନ ଆମେ ଖୋଜି ପାଇପାରିବା ।

*(ସୁରତା, ବଲାଙ୍ଗିର ୨୦୦୨)*

# ଭବିଷ୍ୟତରେ କୋଶଲୀ ଭାଷା ଓ ସାହିତ୍ୟ

(ସଂକଳ୍ପ - ୨୦୨୦)

ଆଜିଠୁ ପନ୍ଦର ବର୍ଷ ପରେ ଆମ ଅଞ୍ଚଳର ଭାଷା ଓ ସାହିତ୍ୟ କେଉଁ ରୂପ ନେବ ସ୍ଥିର କରିବା ଏକ କଠିଣ କାମ । ପ୍ରଥମତଃ ଭାଷା ଏକ ସାମୂହିକ କର୍ମ, ଅଭ୍ୟାସଗତ ଭାବରେ ଆମେ ଏହାର ଉପଭୋଗ ଓ ଉତ୍ପାଦନ କରିଚାଲୁ । ଯଦି କିଏ ଜଣେ ଯୋଜନା ବଦ୍ଧ ଭାବରେ ଭାଷାକୁ ସାଇତି ରଖେ, ଭାଷାର ସର୍ବୋତ୍ତମ ବ୍ୟବହାରମାନଙ୍କୁ ସଜାଡ଼ି ରଖେ ତାହାହେବ କୌଣସି ଭାଷାର ଏକ ସଂରକ୍ଷଣ ବ୍ୟବସ୍ଥା । କିନ୍ତୁ ଏହାକୁ ଯଦି ଲୋକେ ସ୍ୱୀକାର କରିବେ ନାହିଁ, ତାହା ଭାଷା ପଦବାଚ୍ୟ ହେବନାହିଁ । ପରିବର୍ତ୍ତନଶୀଳ ସମୟରେ ଭାଷା ବଦଳି ଚାଲିଥିବ ଏବଂ ଏଇ ସଂରକ୍ଷିତ ଉପାଦାନ ସବୁ ଆସ୍ତେ ଆସ୍ତେ ଅଦରକାରୀ ହୋଇପଡୁଥିବ । ଏଣୁ ଭାଷାର ସଂରକ୍ଷଣ ଏକ ବ୍ୟକ୍ତିଗତ ବ୍ୟପାର ହେଲେହେଁ ସାମୁହିକ ସ୍ୱୀକୃତି ବିନା ଏହା ମୂଲ୍ୟହୀନ । ଏଣୁ ଆମକୁ ପ୍ରଥମେ ହିଁ ସ୍ଥିର କରିବାକୁ ପଡ଼ିବ ଆମ ଭାଷାର ଉନ୍ନତି ପାଇଁ ଯଦି ଆମେ ସଂରକ୍ଷଣ କରି ଭବିଷ୍ୟତ ପାଇଁ ସାଇତି ରଖିବା ତାହା କେଉଁ ସମୂହର ସ୍ୱୀକୃତିରେ ପ୍ରତିଷ୍ଠିତ ହେବ ? ଦ୍ୱିତୀୟତଃ ଆମ ଅଞ୍ଚଳର ଭାଷା କହିଲେ ଆମେ କଣ ବୁଝିବା ? ଆମର ସାଂସ୍କୃତିକ ଜୀବନରେ ବ୍ୟବହୃତ ଭାଷା ନା ଆମ ସାମାଜିକ ଜୀବନରେ ବ୍ୟବହୃତ ଭାଷା ? ସାମାଜିକ ଜୀବନରେ ଆମେ ବ୍ୟବହାର କରୁଥିବା କୋଶଲୀ ଭାଷା ପ୍ରତି ଲୋକସମୂହର ଦୃଷ୍ଟିଭଙ୍ଗୀ କ'ଣ, ସ୍ୱୀକୃତି କେତେ ରହିଛି ? ପୁଣି ଯେଉଁ କ୍ଷମତା କେନ୍ଦ୍ର ସ୍ୱୀକାର କଲେ ଭାଷାଟିଏ ସର୍ବଜନ ସ୍ୱୀକୃତି ପାଏ, ସେହି କ୍ଷମତା କେନ୍ଦ୍ରର ଏହି ଭାଷା ପ୍ରତି ଦୃଷ୍ଟିଭଙ୍ଗୀ କ'ଣ ଏବଂ ତା'ଠାରୁ ସ୍ୱୀକୃତି ଆଣିବା ପାଇଁ ଜନ ସମୁଦାୟର କେତେ ଶତାଂଶ ଲୋକ ଚେଷ୍ଟିତ ? ଏବେ ତୃତୀୟ ପ୍ରସଙ୍ଗକୁ

ଆସିବା, ଭାଷାର ବିକାଶ ପାଇଁ ଆମେ ଯୋଜନା କଲେ। କ୍ଷମତା କେନ୍ଦ୍ର ସ୍ୱୀକାର କଲା। ଏ ଭାଷାର ଉନ୍ନତି ପାଇଁ ଆମେ ସମସ୍ତେ ଏକାଠି ହେଲେ । ତା ହେଲେ ଆଗାମୀ ପନ୍ଦର ବର୍ଷପରେ ଆମେ କୋଶଳୀ ଭାଷାକୁ ନେଇ କ'ଣ କ'ଣ ସ୍ୱପ୍ନ ଦେଖିପାରିବା? ସ୍କୁଲ କଲେଜରେ ଏ ଭାଷାରେ ପାଠ ପଢ଼ାଯାଇ ପାରିବ? ଏ ଭାଷାରେ ପଢୁଆ ପିଲାମାନେ ଜୀବନ ଯୁଦ୍ଧରେ କେତେଦୂର ସଫଳ ହେବେ? ଏମିତି ଅନେକ ପ୍ରଶ୍ନ ।

ଏ ତିନୋଟି ପ୍ରସଙ୍ଗକୁ ଆଖିରେ ରଖି ଏ ଅଞ୍ଚଳର ଭାଷା ସଂପର୍କରେ ସ୍ୱପ୍ନ ଦେଖିବା । ପ୍ରଥମ କଥା ହେଲା ଭାଷାର ସଂରକ୍ଷଣ । କୋଶଲୀ ଭାଷା ସୁନ୍ଦରଗଡ଼ରୁ କୋରାପୁଟ ଯାଏଁ ଯେଉଁ ଦୀର୍ଘ ଅଂଚଳରେ ଜନମୁଖରେ କଥିତ ହୁଏ, ଯାହାପାଇଁ ଲେଖାପଢ଼ାର ନୂଆଁ ଏକ ପରଂପରା ଆଜି ଗଢ଼ିଉଠିଛି, ତାକୁ ସଂଗ୍ରହ କରିବା ଏକାନ୍ତ ଆବଶ୍ୟକ । ତାହା ଏବେ ସଚେତନ ଭାବରେ ଏଠି ସେଠି ଚାଲିଛି । ଫଳରେ, କଳାହାଣ୍ଡି ଓ ସମ୍ବଲପୁର, ସୁନ୍ଦରଗଡ଼ ଓ କୋରାପୁଟ ଭିତରେ ଥିବା ଭାଷା ପ୍ରୟୋଗର ପାର୍ଥକ୍ୟ ସବୁ ଏବେ ଆଲୋଚନା ପାଇଁ ଉପସ୍ଥାପିତ ହୋଇପାରୁଛି । ସେ ଅଞ୍ଚଳର ଲେଖକମାନଙ୍କର ଭାଷାକୁ ତୁଳନା କଲେ ଆଞ୍ଚଳିକ ବିବିଧତା ଆମପାଇଁ ଉନ୍ମୁକ୍ତ ରହୁଛି । ତା' ସହିତ ଆଉ ଏକ ଚେଷ୍ଟା ବି ଚାଲିଛି, ତାହା ବି ସଚେତନ ଭାବରେ ଏ ପାର୍ଥକ୍ୟମାନଙ୍କୁ ଅଧିକରୁ ଅଧିକ ପ୍ରଦର୍ଶନ କରି ଜିଲ୍ଲାୱାରୀ ସଂସ୍କୃତି ଓ ଭାଷାର ପରିଚିତ ଗଠନ ପାଇଁ ପ୍ରଚେଷ୍ଟା । ଭଷା ଓ ସଂସ୍କୃତିକୁ ଜିଲ୍ଲାସହ ଯୋଡ଼ିବା କେବେବି ଉଚିତ୍ ନୁହେଁ । କାହିଁକିନା ଏହା ଏକ ଜାତିର ଅସ୍ମିତାର ପ୍ରଶ୍ନ । ଅତିକମରେ ଏକ ଭୌଗୋଳିକ ଅଂଚଳ ଏଥିପାଇଁ ଚିହ୍ନିତ ହେଉ, ସେ କଥା ଏବେ କିଏ ଶୁଣୁଛି । ଏଣୁ ଭାଷା ସଂରକ୍ଷଣର କାମ ଯଦି ସତର୍କ ଭାବରେ ନ ହୁଏ, ଆମର ପାରସ୍ପରିକ ବୁଝାମଣା ସତ୍ତ୍ୱେ ପ୍ରଜାତି ଓ ଅଂଚଳକୁ ନେଇ ଆଗାମୀ ପନ୍ଦର ବର୍ଷ ପରେ କୋଶଳ ଅଂଚଳ ଭିନ୍ନଭିନ୍ନ ଭାଷା ଓ ଜାତିର ପରିଚୟରେ ପରିଚିତ ହେବ । ଏକଥାର ରାଜନୈତିକ ସୁବିଧା ଯାହା ଥାଉନା କାହିଁକି, ଏହାହେବ ଏକ ସାଂସ୍କୃତିକ ବିପର୍ଯ୍ୟୟ ଓ ଐତିହାସିକ ଭ୍ରାନ୍ତି । ଏଣୁ ସଂଗ୍ରହ ଯେତେ ସହଜ ମନେହେଲେ ହେଁ ଯଦି ସଂଗ୍ରହର ଉଦ୍ଦେଶ୍ୟ

କୂଟ ଅଭିସନ୍ଧି ଦ୍ୱାରା ପ୍ରେଣରିତ, ତେବେ ତାହା ଭବିଷ୍ୟତରେ ଆମର ଭାଷିକ ଅସ୍ମିତା ପ୍ରତି ଏକ ପ୍ରଶ୍ନଚିହ୍ନ ହୋଇ ଛିଡ଼ା ହେବ । ସେଥିରୁ ରକ୍ଷା ପାଇବା ପାଇଁ ଆମ ପାଖରେ ସେତେବେଳେ ଆଉ ବାଟ ନ ଥିବ । ଏଣୁ ସଂଗ୍ରହ ହେଉ, ଭାଷାର ସଂରକ୍ଷଣ ପାଇଁ ଚେଷ୍ଟା ଜାରି ରହୁ, ତାହା ସହ ଏକ ସଦିଚ୍ଛା ରହୁ, ପ୍ରଚେଷ୍ଟା ରହୁ, ସମଗ୍ର କୋଶଳ ଅଂଚଳର ଭାଷାରେ ଥିବା ସମାନତା ଖୋଜିବା ପାଇଁ। ମୋର ବିଶ୍ୱାସ ଏ ଭାଷାକୁ ସୁରକ୍ଷିତ ରଖିବା ପାଇଁ ହେଲେ ଆମକୁ ପ୍ରଥମେ ଏଇ ଆଗାମୀ ପନ୍ଦର ବର୍ଷ ଭିତରେ ଏହାହିଁ କରିବାକୁ ପଡ଼ିବ ।

ଏବେ ଦ୍ୱିତୀୟ ପ୍ରସଙ୍ଗକୁ ଆସନ୍ତୁ । ଭାଷାର ସାମୁହିକ ସ୍ୱୀକୃତି ବିନା ଭାଷା ଭାଙ୍ଗିଭାଙ୍ଗି ଯାଏ, ଭାଷା ସ୍ଖଳନ ଘଟେ । ଏଣୁ  ଭାଷାର ମାନକ ରୂପଟିଏ ଆମକୁ ସ୍ଥିର କରିବାକୁ ପଡ଼ିବ, ଯାହା ସୁନ୍ଦରଗଡ଼ ଓ କୋରାପୁଟ ଉଭୟଙ୍କ ପାଇଁ ସ୍ୱୀକୃତ ହେବ । ସର୍ବାଦୌ ସ୍ୱୀକାର କରିବାକୁ ହେବ ଯେ, ସମସ୍ତେ ଭାଷିକ ବିବିଧତା ମଧ୍ୟରେ ଖୋଜିବାକୁ ହେବ ସର୍ବନିମ୍ନ ସମାନତା ପୁଣି ବିବିଧତା ଭିତରେ ଶୃଙ୍ଖଳାଗତ ସମାନତା । କୌଣସି ଏକ ଅଂଚଳର ଭାଷାକୁ ସାଂସ୍କୃତିକ କେନ୍ଦ୍ର ଭାବେ ସ୍ଥିର କଲେ ହିଁ ବିପଦ, ତାହା ବଲାଙ୍ଗୀର ହେଉ କି ସମ୍ବଲପୁର, ଭବାନୀପାଟଣା ହେଉ କି ଜୟପୁର । ସମସ୍ତ ବିକଳ୍ପ ମାନଙ୍କୁ ଉନ୍ମୁକ୍ତ ରଖି ଆମକୁ ଭାଷାର ଯୋଜନାଟିଏ ପ୍ରସ୍ତୁତ କରିବାକୁ ପଡ଼ିବ । ଭାଷା ଯୋଜନା ଏକ ଜଟିଳ ପ୍ରକ୍ରିୟା ଏବଂ ଏଥିପାଇଁ ଅଜାଣତରେ ଯୋଜନା ପ୍ରଣେତାମାନେ ଭୁଲ କରି ବସନ୍ତି । LACHMAN M. KHUBCHANDANI (୧୯୯୧) ଯଥାର୍ଥରେ କହନ୍ତି "In a honogeneous speech community the language - elite comprising of a dominent interest group usually commands the situation to induce major changes in the speech habits of the masses" । ସମଜାତୀୟ ଭାଷାଗୋଷ୍ଠୀମାନଙ୍କ ମଧ୍ୟରେ ପ୍ରଭାବଶାଳୀ ବିଦଗ୍ଧ ଜନସମୁଦାୟ ହିଁ ସାଧାରଣ ଜନତାର ଭାଷିକ ବ୍ୟବହାର ଓ ଭାଷାରେ ପରିବର୍ତ୍ତନ ପାଇଁ ପରିବେଶ ସୃଷ୍ଟି କରିବାକୁ ସମର୍ଥ । ଏ ସଂପର୍କରେ ଆମ ଭାଷାର ଲାଙ୍ଗୁଏଜ ଏଲିଟ୍ କେଉଁମାନେ ?

ସେମାନଙ୍କର ମାନସିକ ପ୍ରବୃତ୍ତି କ'ଣ ? ଏହା ଉପରେ ହିଁ ନିର୍ଭର କରୁଛି ଏ ଭାଷାର ଆଗାମୀ ଭବିଷ୍ୟତ । ଏମାନଙ୍କୁ ହିଁ କୁହାଯିବ ଭାଷାର କ୍ଷମତାକେନ୍ଦ୍ର । ଆମ ଅଜାଣତରେ ଆମେ ଯେଉଁମାନେ ଏ ଭାଷାର ଏଲିଟ୍ ବା ବିଦଗ୍ଧଜନ, ଆମେ ତିଆରି କରିଛୁଁ ଏଇ କ୍ଷମତା କେନ୍ଦ୍ର । ସାଂସ୍କୃତିକ ଜୀବନରେ ଆମେ ବ୍ୟବହାର କରୁଥିବା ଭାଷାକୁ ସାମାଜିକ ଜୀବନକୁ ଓହ୍ଲେଇ ଆଣିବା ପାଇଁ ଆମେ ସତତ ଚେଷ୍ଟାଶୀଳ । ଆମର ଅବଚେତନରେ ଏଇ ପ୍ରକ୍ରିୟା ସବୁବେଳେ ଋଲିଛି । ଏଣୁ କୋଶଲୀ ଭାଷାରେ ସଚେତନ ଭାବରେ ଆମେ ଯେତେ ସାମୁହିକ ହେବାପାଇଁ ଚେଷ୍ଟା କଲେହେଁ ଦୀର୍ଘଦିନର ଅଭ୍ୟାସ, ପ୍ରାୟ ଋରିଶହ ବର୍ଷର ଲିଖନ ପରମ୍ପରା ଏବଂ ସମସାମୟିକ ଶିକ୍ଷା ପଦ୍ଧତିର ଋପ, ଆମର ସାମାଜିକ ଭାଷାକୁ ସଂକୋଚିତ ଓ ନ୍ୟୁନ କରିଋଲିଛି । ଏଥିରୁ ମୁକ୍ତିପାଇଁ ଆଗାମୀ ପନ୍ଦର ବର୍ଷରେ କ'ଣ କରିବା, ଏକଥା ବାରମ୍ବାର ବିଋର ଆଲୋଚନା ହେବାକଥା । ଭାଷାର ମାନକୀକରଣ ଆଦୌ ଆବେଗର କଥା ନୁହେଁ । ବୁଦ୍ଧି ଓ ବୈଜ୍ଞାନିକ କୌଶଳର କଥା, ଆମର ଆଗାମୀ ବଂଶଧରମାନଙ୍କୁ ସମର୍ଥ କରି ଗଢ଼ିବାରେ ଆମର ଭାଷା କେତେ ସହାୟକ ହେବ ତାହା ଆଜି ସ୍ଥିର କରିବା କଥା । ଆଗାମୀ ପନ୍ଦର ବର୍ଷ ଭିତରେ ଆମେ ଯଦି ସ୍ଥିର କରି ପାରିବା ନାହିଁ, ସମୟ ଆପଣା ବାଟରେ ଏକ ସମାଧାନ ଉପସ୍ଥାପନ କରିବ ଯାହା ଆମକୁ ମଙ୍ଗଳକର ହୋଇ ନପାରେ । ଆମ ଭାଷା ପାଇଁ ଆଗାମୀ ପନ୍ଦର ବର୍ଷ ନିଶ୍ଚୟ ଏକ ସଂକ୍ରମଣ କାଳ । ଆମ ପୀଢ଼ିରେ ହିଁ ଆମକୁ ସ୍ଥିର କରିବାକୁ ହେବ, ଆମ ଜୀବନକାଳରେ ହିଁ ହଜେଇ ଦେବା ଭାଷାଟିକୁ ବା ସାଇତି ରଖିବା ଆମ ଜିଭରେ, ବହି ପତ୍ରରେ, ଆଗାମୀ ପୀଢ଼ିର ଜୀବନ ଶୈଳୀରେ । ତା ହେଲେ ଆଗାମୀ ପନ୍ଦର ବର୍ଷ ପରେ କୋଶଲୀ ଭାଷାକୁ ନେଇ ଆମେ ସ୍ୱପ୍ନ ଦେଖି ପାରିବା ଓ ସେତେବେଳେ ସ୍ଥିର କରି ପାରିବା ଏ ଭାଷାର ସ୍ଥିତି ସ୍ଥାପକତା କେତେ, ବିଦ୍ୟାଳୟସ୍ତରରେ, ପୁଣି ମହାବିଦ୍ୟାଳୟ ସ୍ତରରେ ଏ ଭାଷାରେ ପାଠ ପଢ଼ା ଯିବା ଉଚିତ୍ ହେବ କି ନା ? ଏଇ ପନ୍ଦର ବର୍ଷ ହେବ ସେଇ ତୃତୀୟ ପ୍ରସଙ୍ଗ ପାଇଁ ଆମର ପ୍ରସ୍ତୁତି ପର୍ବ । ତା' ଆଗରୁ ଭାଷା ସଂପର୍କରେ ଯାହାବି କହିବା ଏକୁଟିଆ ମୁଁ କିମ୍ବା ଏକୁଟିଆ ଆପଣ, ତାହା ଆଗାମୀ କାଳରେ ମିଛହିଁ ହେବ । ମନେରଖିବା, ଭାଷା

ଏକ ସାମୂହିକ କର୍ମ ଏବଂ ଭାଷା ପାଇଁ ଯୋଜନା କ୍ଷମତାକେନ୍ଦ୍ରରୁ ହିଁ ଆସେ । ଏଣୁ ଆମକୁ କ୍ଷମତାକେନ୍ଦ୍ର ହିଁ ନିର୍ଦ୍ଧାରଣ କରିବାକୁ ପଡ଼ିବ, ଯାହାପ୍ରତି ସ୍ୱୀକୃତି ଥିବ ସମସ୍ତ ଅଞ୍ଚଳର ଓ ସବୁ ଭାଷାଭାଷୀର । ଏ ପନ୍ଦର ବର୍ଷ ଭିତରେ ଯଦି ତାହା ହୋଇଯାଏ, ତାହା ନିଶ୍ଚୟ ହେବ ଆମ ପୀଢ଼ିର ସର୍ବୋତ୍ତମ ସାଂସ୍କୃତିକ ପ୍ରାପ୍ତି । ଭାଷା ଗଢ଼ିଉଠିଥାଏ ଗୋଟିଏ ଶୃଙ୍ଖଳା । ଥରେ ଛିଣ୍ଡିଗଲେ ତାକୁ ଯୋଡ଼ିବା ଆଉ ସମ୍ଭବ ହୁଏନାହିଁ । ଯେମିତି ଆଜି ସଂସ୍କୃତି ପାଇଁ ଯେତେ ଯୋଜନା କଲେ ବି, ଯେତେ ପ୍ରୋତ୍ସାହନ ଦେଲେ ବି ତା'କୁ ସୁରକ୍ଷିତ ରଖିବା କଷ୍ଟକର ହୋଇପଡୁଛି ।

ଆଉଏକ କଥା, କୌଣସି ଭାଷାର ସୁରକ୍ଷା ଓ ସ୍ୱୀକୃତି ପାଇଁ ଚେଷ୍ଟା କରିବା ଆମର ସାମ୍ବିଧାନିକ ଅଧିକାର, ପୁଣି ସାଂସ୍କୃତିକ ଦାୟିତ୍ୱ । ହଜାର ହଜାର ବର୍ଷର ସାମୂହିକ ପ୍ରଚେଷ୍ଟାରେ ଗଢ଼ି ଉଠିଥାଏ ଗୋଟିଏ ଭାଷା । ଶବ୍ଦଟିଏ ଭିତରେ ଲୁଚିଥାଏ ଅଜସ୍ର ସମ୍ଭାବନା ଓ ଅଗଣିତ କାହାଣୀ । କିନ୍ତୁ ଗୋଟିଏ ପୀଢ଼ି ଯଦି ଗୋଟିଏ ଭାଷାକୁ ଅବହେଳା କରେ ଇତିହାସରେ ହଜିଯାଏ ସେଇ ଭାଷା । ପ୍ରାଚୀନ କାଳ ଓ ମଧ୍ୟଯୁଗରେ ଆମର ସାମାଜିକ ଓ ସାଂସ୍କୃତିକ ରୂପାନ୍ତରଣର ବେଗ ଥିଲା ମନ୍ଥର । ଏବେ ତାହା ଚଳଚଞ୍ଚଳ ହୋଇ ଉଠିଛି । ଏ କାଳରେ ଗୋଟିଏ ଭାଷା ଇତିହାସରେ ହଜିଯିବା ଖୁବ୍ ସହଜ । ଏବେ ଭାଷାକୁ ମଧ୍ୟ ରାଜନୈତିକ ସ୍ୱୀକୃତି ଲୋଡ଼ା ପଡ଼ିଲାଣି । ଭାରତୀୟ ସମ୍ବିଧାନର ଅଷ୍ଟମ ସୂଚୀରେ ସ୍ୱୀକୃତି ପାଇବା ପାଇଁ ଭାଷାମାନଙ୍କ ମଧ୍ୟରେ ଚେଷ୍ଟା ଆରମ୍ଭ ହେଲାଣି । ଆମକୁ ବି ଆମର ଭାଷାପାଇଁ ଯୋଜନା ପ୍ରସ୍ତୁତ କରିବାକୁ ପଡ଼ିବ ଓ ତାହାବି ଏଇ ୧୫ ବର୍ଷ ଭିତରେ । ସମୟର ପ୍ରଲମ୍ବିତ ଧାରାରେ ୧୫ ବର୍ଷ ଖୁବ୍ କମ୍ । ମାତ୍ର ଜଣେ ବ୍ୟକ୍ତିର ଜୀବନକାଳକୁ ଦେଖିଲେ ଏହା ଦୀର୍ଘସମୟ । ଏଣୁ ଆମର ଜୀବନକାଳ ଭିତରେ ଆମ ଭାଷା ଓ ସାହିତ୍ୟର ପ୍ରଗତି ପାଇଁ ସମସ୍ତଙ୍କର ଚେଷ୍ଟା ରହୁ, ଏହା ନିବେଦନ ।

ଏବେ ସାହିତ୍ୟକୁ ଆସନ୍ତୁ ଆମ ଅଞ୍ଚଳର ସାହିତ୍ୟ କହିଲେ ଆମେ କଣ ବୁଝିବା ? ଏ ଅଞ୍ଚଳରେ ଜନ୍ମ ହୋଇଥିବା ଲୋକମାନଙ୍କ ଦ୍ୱାରା ଲିଖିତ ସାହିତ୍ୟ, ଆମ ଅଞ୍ଚଳର ଭାଷାରେ ବା କୋଶଲୀ ଭାଷାରେ ଲିଖିତ ସାହିତ୍ୟ କିମ୍ବା ଏ ଅଞ୍ଚଳର

ଜନଜୀବନର ଅନୁଭୁତିକୁ ନେଇ ଲିଖିତ ସାହିତ୍ୟ । ସାହିତ୍ୟର ଏମିତି ଭୌଗୋଳିକ ପରିଚିତି ସମ୍ଭବ କି ? ଯଦି ସମ୍ଭବ ତାହା କେତେଦୂର ଅନ୍ୟମାନଙ୍କ ଦ୍ୱାରା ସ୍ୱୀକୃତ । ମନେ କରନ୍ତୁ କଥାକାର ଚନ୍ଦ୍ରଶେଖର ରଥଙ୍କ ଜନ୍ମସ୍ଥାନ ବଲାଙ୍ଗିର, କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଜନ୍ମସ୍ଥାନ ସମ୍ବଲପୁର ଜିଲ୍ଲାରେ । ତାଙ୍କ ସାହିତ୍ୟକୁ ଆମେ ଏ ଅଞ୍ଚଳରର ସାହିତ୍ୟ କହିପାରିବା କି ? ଠିକ୍ ସେମିତି ଇଂରାଜୀରେ କିଏ ଜଣେ ବିଦେଶୀ ଲୋକ ଆମ ଅଞ୍ଚଳର ଭୋକ, ମରୁଡ଼ିକୁ ନେଇ ସୃଷ୍ଟି କରିବେ ଏକ କାଳଜୟୀ ଉପନ୍ୟାସ । ତାକୁ ଆମେ କହିପାରିବା କି ଏହା ଆମ ଅଞ୍ଚଳର ସାହିତ୍ୟ ? କୋଶଲୀ ସାହିତ୍ୟ କହିଲେ ଏ ଅଞ୍ଚଳରେ ଜନ୍ମିଥିବା ଲୋକର, କୋଶଲୀ ଭାଷାରେ ଆମ ଅଞ୍ଚଳର ଜୀବନାନୁଭୂତିକୁ ନେଇ ରଚିତ ସାହିତ୍ୟ । କୋଶଲୀ ସାହିତ୍ୟର ଏଇ ସଂଜ୍ଞା ଆପାତତଃ ସଂକୀର୍ଣ୍ଣ ମନେ ହୋଇପାରେ କିନ୍ତୁ ମୋର ମତରେ ଏହା ଅଧିକ ତାର୍କିକ ଓ ଯୁକ୍ତିସଂଗତ । ଭାଷା ସାହିତ୍ୟର ପ୍ରକାଶକ ଶକ୍ତି । ଏଣୁ ଭାଷା ହିଁ ପ୍ରଥମେ ଚିହ୍ନିତ କରେ ଏକ ସାହିତ୍ୟକୁ । ଏଣୁ କୋଶଳୀ ଭାଷାରେ ଲିଖିତ ସାହିତ୍ୟକୁ ହିଁ ଆମେ ପ୍ରଥମେ କହିବା କୋଶଲୀ ସାହିତ୍ୟ । ତା'ପରେ ଆସିପାରେ ଲେଖକର ଜନ୍ମସ୍ଥାନ ଏବଂ ସାହିତ୍ୟର ଘଟଣାସ୍ଥାନ କଥା । ସେଦିନ କବି ରମାକାନ୍ତ ରଥ ସୁନ୍ଦର ଭାବରେ ବୁଝେଇ ଦେଲେ ସାହିତ୍ୟ କେମିତି ସବୁସ୍ଥାନର, ସମାନ ଅନୁଭବର ; ମହାନଦୀର ପାଣି ସବୁଠି ସମାନ ମିଠା, ଜହ୍ନ ଓ ସବୁଜ କ୍ଷେତ ବିହ୍ୱଳ କରେ ସବୁଠି ସମସ୍ତଙ୍କୁ । ତେବେ ସାହିତ୍ୟରେ ନିର୍ଦ୍ଦିଷ୍ଟ ଅଂଚଳର କହଁର ରହେ କି ନା ? ଯଦି ରହେ କେଉଁଠୁ ଆସେ, ସେଇ କହଁର ? ଉଭୟ କଥା ନିଜ ନିଜ ଯୁକ୍ତିରେ ଠିକ୍ । ସାହିତ୍ୟ ସବୁବେଳେ ଏକ ବ୍ୟକ୍ତିର କଥା କହେ । ସେ ବ୍ୟକ୍ତି ଏକ ଶାଶ୍ୱତ ମଣିଷ ଭାବରେ ସବୁକାଳର, ସବୁସ୍ଥାନର । କିନ୍ତୁ ଏକଥା ଭୁଲିଗଲେ ଚଳିବ ନାହିଁ, ବ୍ୟକ୍ତି ଦେହରେ ଲାଗିଥାଏ ସ୍ଥାନ ଓ ସମୟର କହଁର । ତାହା ବଲାଙ୍ଗିର ହେଉ ବା ବର୍ଲିନର ହେଉ ।

ଏମିତି ଦେଖିଲେ କୋଶଲୀ ସାହିତ୍ୟ ଖୁବ୍ କମ୍, ପୁଣି ବେଶୀ ପ୍ରାଚୀନ ନୁହେଁ । ଏ ଅଞ୍ଚଳ ସଂପର୍କରେ ବେଶୀ କିଛି ଲେଖାଯାଇ ନାହିଁ କୌଣସି ଭାଷାରେ, କୌଣସି ପ୍ରବିଧାରେ, ଗପ, କବିତା, ଉପନ୍ୟାସ କିମ୍ବା ନାଟକରେ । ଏହାର ଅର୍ଥ

ନୁହେଁ ଏ ଅଞ୍ଚଳରେ ସାହିତ୍ୟିକ ଉପାଦାନର ଅଭାବ ରହିଛି । ଏହାବି ନୁହେଁ ଏ ଅଞ୍ଚଳରେ ସାହିତ୍ୟିକଙ୍କର ଅଭାବ ରହିଛି । ଗୋଟିଏ କଥା ହୋଇପାରେ ଏଠି ଏମିତି ଲେଖିବା ପରମ୍ପରାର ଅଭାବ ରହିଛି । ଏ ପରମ୍ପରାକୁ ଭାଙ୍ଗିବାର ସ୍ପୃହା ଏବେ ଆରମ୍ଭ ହେବାକଥା । ଏବେ ଚିହ୍ନିବା କଥା, ଏ ପରମ୍ପରାର ମୂଳରେ ରହିଛି କେଉଁ ଏକ ପ୍ରଥାବଦ୍ଧ ମାନସିକତା । ଜଣାଣ ଜଗନ୍ନାଥଙ୍କ ପାଇଁ ଲେଖା ଯାଉଥିଲା, ଲେଖା ଯାଉଛି, ଏବେ ନୂଆଁ ଆରମ୍ଭ ହୋଇଛି ସମଲେଶ୍ୱରୀଙ୍କୁ ପ୍ରାର୍ଥନା । ଏବେ ସାହିତ୍ୟରେ ନୂଆଁ ଏକ ଯୁଗର ସୂତ୍ରପାତ ଘଟିଛି । ଆଗାମୀ ପନ୍ଦର ବର୍ଷ ପରେ ତାହା ବିକଶିତ ହେବ । ଭାଷାପାଇଁ ଯୋଜନା ହୋଇ ନପାରେ, ମାନକ ଭାଷାଟିଏ ଗଢ଼ି ଉଠି ନପାରେ, କିନ୍ତୁ ଅନେକ କଲମର ପ୍ରତିଜ୍ଞା ରହିଛି ଏ ଅଞ୍ଚଳ ସଂପର୍କରେ, କୋଶଲୀ ଭାଷାରେ, ଏ ଅଞ୍ଚଳର ଲୋକେ ଲେଖିବେ ।

ଆପଣ ପଚାରି ପାରନ୍ତି ଏମିତି ଏକ ଦୃଢ଼ୋକ୍ତିର ପୃଷ୍ଠଭୂମି କଣ ? ସାହିତ୍ୟରେ ସାର୍ବଜନୀନତାର କାଳ ସରିସରି ଆସୁଛି । ବହୁତ ଲେଖା ହେଲାଣି ଏଇ ଅଜବ୍ ଜୀବ ମଣିଷ ସଂପର୍କରେ, କେତେଦିନରୁ ପୁଣି ସବୁଭାଷାରେ । ଏବେ ନୂଆଁ ଆରମ୍ଭ ହୋଇଛି, ମଣିଷର ଆଞ୍ଚଳିକ ବୈଚିତ୍ର୍ୟର କଥା । ଜଗତୀକରଣରେ ଆମେ ଯେତେ ଯେତେ ବିଶ୍ୱଗ୍ରାମରେ ପହଞ୍ଚୁଛୁଁ, ସେତେବେଳେ ଆମର ଅସ୍ମିତା ଲୋପ ପାଉଛି । ଆମ ପରିଚୟର ସଂକଟ ଆମକୁ ନିଜର ନିଆରାପଣ ଜାହିର୍ କରିବାକୁ ଉତ୍ସୁକାଉଛି । ଆମ ପରିଚୟର ମୂଳଭିତ୍ତି ରହିଛି ଏଇ ମାଟିରେ, ଏଇ ଭାଷାରେ, ଯେଉଁଠିକି ଯିବା, ଯେଉଁଠି ଛିଡ଼ା ହେବା, ବୁଣି ହୋଇଯିବ ସେଇ କହଁର, ସେଇଠି । ଏ ଅଞ୍ଚଳର ସାହିତ୍ୟ ଏମିତି ଏକ ମନ୍ତ୍ରରେ ଯଦି ଦୀକ୍ଷିତ ହେବ ତା'ହେଲେ ହିଁ ଆଗାମୀକାଳରେ ଏଠି ସମ୍ଭବ ହେବ ଦୁଇଟି ନୂଆ କଥା ।

ପ୍ରଥମ କଥା ହେଲା ଆମ ଅଞ୍ଚଳର ଭାଷାରେ ଥିବା ଉଦ୍‌ବୋଧନୀ ଶକ୍ତି ଆବିଷ୍କୃତ ହେବ । ସହଜ ସରଳ ଭାବରେ ଆମେ ନିଜକୁ ପ୍ରକାଶ କରିପାରିବା । ଏ ଅଞ୍ଚଳର କବି ଲେଖକଙ୍କ ସୃଜନ ପ୍ରତିଭାର ସର୍ବୋତ୍ତମ ବିନିଯୋଗ ଘଟିବ । କାହିଁକି ନା ଅନୁଭବକୁ ପ୍ରକାଶ କରିବା ପାଇଁ ମାତୃଭାଷା ହିଁ ସର୍ବାଧିକ ସମର୍ଥ । ଦ୍ୱିତୀୟ କଥା

ହେଲା ଏ ଅଂଚଳର ସୌନ୍ଦର୍ଯ୍ୟ ବୋଧ ଓ ଅନୁଭବର ଦୃଷ୍ଟିଭଙ୍ଗୀ ଠିକ୍ ରୂପେ ଉପସ୍ଥାପିତ ହୋଇପାରିବ । ଏ ପ୍ରସଙ୍ଗରେ ଗୋଟିଏ କଥା କହିଲେ ଅବାନ୍ତର ହେବନାହିଁ ଯେ ପ୍ରତିଟି ଭାଷାର ଥାଏ ନିଜସ୍ୱ ସୌନ୍ଦର୍ଯ୍ୟ ବୋଧ । ପ୍ରତିଟି ସଂସ୍କୃତିର ଥାଏ ନିଜସ୍ୱ ଅନୁଭବ ଓ ପ୍ରତୀତି । ଏସବୁ ମଣିଷଟିଏ ସେ ଅଂଚଳ ର ପ୍ରକୃତି ସହ ଲଢ଼ି ଲଢ଼ି ସାଲିସ୍ କରି, ସଂଗ୍ରାମ କରି ତାହା ଶିଖିଥାଏ । ତାକୁ ଭାଷାରେ ସାଇତି ରଖିଥାଏ ଅନନ୍ତ କାଳଯାଏଁ । ସେଇ ଭାଷାଭାଷୀମାନଙ୍କୁ ନେଇ ତାହା ଗଢ଼ିଗଢ଼ି ଚାଲିଥାଏ । ତାକୁ ଏଇ ପନ୍ଦର ବର୍ଷ ଭିତରେ ହିଁ ଆମକୁ ଖୋଜିବାକୁ ପଡ଼ିବ ଓ ଲେଖି ରଖିବାକୁ ପଡ଼ିବ ସାହିତ୍ୟରେ ।

ଆଉ ଏକ ତୃତୀୟ କଥା ସମ୍ଭବ ହେବ, ଯଦିଓ କଥାଟି ଖୁବ୍ ଗୌଣ । ଏତେ ବର୍ଷର ସାହିତ୍ୟ ରଚନା ପରେ କେତେଜଣ କବି, କେତେଜଣ ଔପନ୍ୟାସିକ ଏ ଅଂଚଳର ନୂଆ ଧାରାଟିଏ ସୃଷ୍ଟି କରି ପାରିଛନ୍ତି ? ମୁଁ ପୁରସ୍କାର କଥା କହୁନାହିଁ, କହୁଛି ସ୍ୱୀକୃତିର କଥା । କେତେଜଣ କବି ଏ ଅଞ୍ଚଳର ଓଡ଼ିଆରେ ସ୍ୱୀକୃତ ? ଭାଷିକ ଅକ୍ଷମତା କେବଳ ନୁହେଁ, ମାନସିକ ସଂଦିଗ୍ଧତା ଏମାନଙ୍କୁ ଓଡ଼ିଆରେ ପ୍ରତିଷ୍ଠିତ କରି ପାରି ନାହିଁ ବୋଧହୁଏ । କିମ୍ବା ପ୍ରତିଟି ପାଠକ ରହେଁ ନିଜର ପ୍ରିୟ କବି, ପ୍ରିୟ ଲେଖକ ସହ ଆତ୍ମିକ ସମ୍ପର୍କ । ପଶ୍ଚିମ ଓଡ଼ିଶାର କେତେଜଣ ଲେଖକଙ୍କ ଭାଗ୍ୟରେ ଏଇ ସୁବିଧା ମିଳିଛି । କେହି ଜଣେ କହିପାରନ୍ତି ସାହିତ୍ୟରେ ଆଞ୍ଚଳିକତା କ'ଣ ? ଯେମିତି ମଣିଷ କହିଲେ ଆମେ କୌଣସି ଏକ ମାଟିରେ କୌଣସି ଏକ କାଳର ମଣିଷକୁ ହିଁ ବୁଝୁ । ସାହିତ୍ୟ କହିଲେ ସେମିତି ବୁଝୁ କୌଣସି ଏକ ସମୟରେ କୌଣସି ଏକ ସ୍ଥାନର କଥା । ନୈର୍ବ୍ୟକ୍ତିକ, ନୈର୍କାଳିକ ରଚନା ସାହିତ୍ୟରେ ବୋଧହୁଏ ସମ୍ଭବ ନୁହେଁ । ସାହିତ୍ୟ ସବୁବେଳେ ସ୍ଥାନର, କାଳର, ଏଣୁ ଆଞ୍ଚଳିକ ହେବା ପାଇଁ ବାଧ୍ୟ । ସେ ଅଞ୍ଚଳ କଟକ, ପୁରୀ ହୋଇପାରେ କିମ୍ବା କଳାହାଣ୍ଡି କୋରାପୁଟ ହୋଇପାରେ । ଓଡ଼ିଆ ସାହିତ୍ୟରେ ଆଜିଯାଏଁ ଯାହାବି ଲେଖାଯାଇଛି ଏଇ କାଳରେ, ତାହା ସହରକୈନ୍ଦ୍ରିକ, ମଧ୍ୟବିତ୍ତ ଶ୍ରେଣୀକୈନ୍ଦ୍ରିକ ଏବଂ ସ୍ଥାନ ଦୃଷ୍ଟିରୁ, ଦୃଷ୍ଟିଭଙ୍ଗୀ ଦୃଷ୍ଟିରୁ କଟକ-ଭୁବନେଶ୍ୱରକୈନ୍ଦ୍ରିକ । ଏମିତି ମାନସିକତା ହିଁ ଆମ ରଚନାକୁ ନିୟନ୍ତ୍ରିତ

କରୁଛି । ଫଳରେ ନିଜ. ଅଜାଣତରେ ଆମ ଲେଖକ ଏଇ ପ୍ରଥାବଦ୍ଧ ପରଂପରାର ଦାସ ହୋଇଯାଉଛି । ଏଇ ପନ୍ଦର ବର୍ଷ ଭିତରେ ଏ ପରଂପରାରୁ ଆମର ମୁକ୍ତି ଲୋଡ଼ା । ଆମ ମାନସିକତାରୁ ଏଇ ନ୍ୟୁନ ବୋଧକୁ ଫିଙ୍ଗିବାକୁ ପଡ଼ିବ । ଭାଷା ଓ ସାହିତ୍ୟରେ ଉଭୟତଃ ଆଞ୍ଚଳିକ ଅସ୍ମିତା ପ୍ରତିସ୍ଥାପିତ କରିବାକୁ ପଡ଼ିବ ।

ଭାଷା ଯେମିତି ଏକ ସାମୁହିକ କର୍ମ,ସାହିତ୍ୟ ସେମିତି ଏକ ବ୍ୟକ୍ତିଗତ କର୍ମ । ସାହିତ୍ୟିକ ରଚନା ପ୍ରକ୍ରିୟାରେ ସମୁହର ପ୍ରଭାବ ରହିପାରେ । କିନ୍ତୁ ଜଣେ କବି ବା ଲେଖକ ନିଜ ମନଭୂମିରୁ ହିଁ ଲେଖେ । ଏ ଅଞ୍ଚଳର କୌଣସି ଲେଖକଙ୍କୁ ମୋ ପରି ଜଣେ ଅକିଞ୍ଚନ ଏଇଟା ଲେଖନ୍ତୁ, ଏମିତି ଲେଖିବା କଥା, ଆଗାମୀ ବର୍ଷମାନଙ୍କରେ ଏହା ଲେଖାହେଉ ଏମିତି ଉପଦେଶ ଦେବା ଧୃଷ୍ଟତା ହେବ । ଜଣେ ସାହିତ୍ୟିକ ପାଇଁ ଯୋଜନା ପ୍ରସ୍ତୁତ କରିବାକୁ ମୁଁ ବା କିଏ ? ଏକଥା ଜାଣିବା ସତ୍ତ୍ୱେ ଏ ଅଞ୍ଚଳର ସାହିତ୍ୟିକମାନଙ୍କୁ କେତୋଟି ପ୍ରଶ୍ନ ବିନମ୍ରତା ସହିତ ପଚରାଯାଇପାରେ । ଆମେ ଆଜିଯାଏଁ ଲେଖିଥିବା ସାହିତ୍ୟର ସ୍ୱୀକୃତିକେନ୍ଦ୍ର କିଏ ? ଆମେ କାହାପାଇଁ ଲେଖୁ ? କିଏ ଆମକୁ ପ୍ରେରଣିତ କରେ ? ଦେଖୁଥିବା ଜୀବନ ନା କଳ୍ପିତ ବହିପଢ଼ା ଅନୁଭବ ? ଆମର ଅନୁଦାର ପ୍ରକୃତି ଖରା, ଭୋକ, ମରୁଡ଼ିର ଜୀବନ କାହିଁକି ଆମେ ଭୁଲିଯାଉଁ ଲେଖିଲା ବେଳେ ? ଆମର ଏଇ ଅନୁଭବ ସବୁ କଣ ସାହିତ୍ୟ ଜଗତ ପାଇଁ ଅବାଞ୍ଛିତ ଯେମିତି ଆମ ଭାଷାର ଶବ୍ଦ ସବୁ ଛପା ବହିକୁ ଯିବାପାଇଁ ଅଯୋଗ୍ୟ ? ଆମ ସାହିତ୍ୟିକ ପରଂପରାରେ ଏହାହିଁ ଆମର ଦୁର୍ଭାଗ୍ୟ । କେଉଁ ସାହିତ୍ୟିକ ବନ୍ଧୁ ଗୋଟିଏ ଦୁଇଟା ଶବ୍ଦ ଗୋଟେ ଅଧେ ଘଟଣା ନିଜ ରଚନାରୁ ଖୋଜି ଉଦାହରଣ ଦେଇପାରନ୍ତି । କିନ୍ତୁ ନିଜ ରଚନାରେ ପ୍ରତିବଦ୍ଧ ଭାବରେ ଓ ବିଶ୍ୱସ୍ତ ରୂପରେ ଏଇ ଅନୁଭବମାନଙ୍କୁ ଲେଖିବାର ସତ୍ ସାହସ ଥିବା ସାହିତ୍ୟିକ ମୁଁ ଆଜିଯାଏ ଭେଟିନି । ଆଗାମୀ ପନ୍ଦର ବର୍ଷ ପରେ ଯଦି ଭେଟେଁ, ତାହା ହେବ ମୋର ପରମ ସୌଭାଗ୍ୟ ।

ଯେଉଁ ଭାଷାରେ ଆଜି ଆମେ ଲେଖା ଆରମ୍ଭ କରିବା, ସେ ଭାଷାର ପ୍ରକାଶନୀ ଶକ୍ତି ଖୋଜିବା, ଉଦ୍ଭାବନ ଓ ଆବିଷ୍କାର କରିବା, ଏ ସମୟ ପାଇଁ ତାହା ଏକାଧାରରେ କଠିଣ ଓ ଜଟିଳ କାମ । ସାଂସ୍କୃତିକ ସାମ୍ରାଜ୍ୟବାଦର ପ୍ରଜାହୋଇ

ଏତେଦିନ ଯାଏ ଆମେ ଥିଲେ । ଆଜି ନୂଆଁ ସାହିତ୍ୟିକ ପରମ୍ପରାଟିଏ ଖୋଜିଲା ବେଳେ ଆମେ ହତଚକିତ ହେବା ନିଶ୍ଚିତ । କିନ୍ତୁ ତା ଭିତରେ ବି ଏ କାମ ଆମ ପୀଢ଼ିର ହାତରେ ହିଁ ହେବ, ଏ ସଂକଳ୍ପ ଆମର ରହିବା ଉଚିତ । ଆମର ଏତେ ଦିନର ନିରବତାକୁ ଅପାରଗତା ଭାବିବା ନାହିଁ । ଆମର ମୌଖିକ ସାହିତ୍ୟରୁ ସଂଗ୍ରହ କରିବା ଶାଣିତ ଆୟୁଧ । ଆମ ଜୀବନର ବିଷାଦ ମୁହୂର୍ତ୍ତ ସବୁକୁ ଭରିଦେବା ସ୍ୱପ୍ନର ସୁରଭିରେ । ପ୍ରତାରଣାରୁ ପାଇବା ପ୍ରେରଣା, ଲାଞ୍ଛନା ଓ ଅବମାନନାରୁ ଧୈର୍ଯ୍ୟ ଓ ଯୁଯୁତ୍ସା, କୋରି ଖାଉଥିବା ଭୋକ ଆମକୁ ପ୍ରମତ୍ତ କରିବ ଅଧିକ ଜିଜୀବିଷାରେ । ଆମର ସାହିତ୍ୟ ଆଗାମୀ ଦିନରେ ଆମକୁ ଏହାହିଁ ଶିକ୍ଷା ଦେବ ।

Globalizing literary study ରେ Edward W.said କହିଥିବା କଥା କହି ଏ ବକ୍ତବ୍ୟକୁ ସମାପ୍ତ କରାଯାଇପାରେ : I could go on, but I do like to conclude, by reminding you of the importance, not of synthesis and the transcendence of opposites, but of the role of geographic knowledge in keeping one grounded, literally, in the often tragic structure of social, historical, and epistemological contests over territory, this includes nationalism, identity, narrative, and ethnicity, so much of which informs the literature, thought and culture of our time

ମୁଁ ଏମିତି କହି ଚାଲିଥାନ୍ତି କିନ୍ତୁ ମୁଁ ଶେଷ କରିବାକୁ ଚାହୁଁଛି ଆପଣ ମାନଙ୍କୁ ମନେ ପକେଇ ଦେଇ ଗୋଟିଏ କଥାର ଗୁରୁତ୍ୱ । ସମନ୍ୱୟ ନୁହେଁ, ବିରୋଧ ତତ୍ତ୍ୱମାନଙ୍କର ଉତ୍କର୍ଷ ନୁହେଁ, ଜଣେ ବ୍ୟକ୍ତିକୁ ମାଟିସହ ଯୋଡ଼ିବାରେ ଭୌଗୋଳିକ ଜ୍ଞାନର ଭୂମିକା, ଅକ୍ଷରତଃ ଏଇ ତ୍ରାସଦ ସାମାଜିକ, ଐତିହାସିକ ଓ ପଦ୍ଧତିଗତ ଜମି ସଂପର୍କୀୟ ବିତର୍କ ଯେଉଁଥିରେ ଅନ୍ତର୍ଭୁକ୍ତ ଆମର ଜାତୀୟତା, ଅସ୍ମିତା, ଇତିହାସ ଓ ପ୍ରଜାତିକ ପରିଚିତି, ଯାହାସହ ଆମ ସମୟର ସାହିତ୍ୟ, ମତବାଦ ଓ ସଂସ୍କୃତି ଆମକୁ ପରିଚିତ କରାଏ ।

*(ଝାରସୁଗୁଡ଼ା ଲୋକଉତ୍ସବ ସ୍ମରଣିକା ୨୦୦୬)*

# କୁସଲି ଭାସାର କାଏଲ୍ ଆର ଆଏଜ

କୁସଲି ଭାସାର କାଏଲ୍ ଆର ଆଏଜ୍ ବାଗିର ଗୁଟେ ବିତର୍କିତ୍ ବିସୋନେ କିଛି କହବାର ଲାଗି ସୁଯୋଗ ଦେଇଥିବାର ଲାଗି ବଲାଁଗିର ଲୋକଉତ୍ସବର ଆୟୋଜନ ସମିତିକେ କୃତଜ୍ଞତା ଜନଉଛେଁ । କେନସି ଭାସାର ଐତିହାସିକ ବିବର୍ତନ ଆଲୋଚନା କର୍‌ବାରଟା ବିତର୍କିତ୍ ଆଏ । ଆର ସେଟା ଯଦି କୁସଲି ଭାସାବାଗିର୍ ଗୁଟେକମ୍ ଅଇତିହାସିକ ଉପାଦାନଥିବାର ଭାସା ବଏଲେ ଅସୁବିଧା ଦୁଇଗୁନ ହେଇଯାଏସି । ଆମର୍ କୁସ୍‌ଲି ସଂସ୍କୃତି ଆର୍ ଭାସା କାହୁଁ କେତେଦିନୁ ଅଛେ, କହିଦେବାରଟା ଯେତ୍‌କି ସହଜ; ସନ ତାରିଖ ଦେଇକରି ସେଟାକେ ଉପସ୍ଥାପନ କର୍‌ବାଟା ସେତିକି କଡ଼ା । ଇଟାଗୁଟେ ଭାସା ଯାର ଇତିହାସ ତ ଅଛେ,ହେଲେ ଐତିହାସିକ ଉପାଦାନ ନାଇଁନ । ମୁହୁଁନୁଁ ମୁହୁକେ ଲହିଁକି ଲହିଁକି ବାଧା, ପ୍ରଭାବ, ସ୍ୱିକାର, ଅସ୍ୱିକାର କେ ବେଖାତର କରି କରି ଚାଲିଆସିଛେ । ହେଲେ ଉପାଦାନ ଅଭାବନୁଁ ଇ ତାର ଅତିତକେ ଏଭେ ଜାନବାରଟା ଆମର୍ ଲାଗି ଗୁଟେ ବଡ଼େ କଡ଼ାକାମ ।

ଇ ଆଲୋଚନାନେ ଆରଗୁଟେ ଅସୁବିଧା ଅଛେ । କୁସଲି ଭାସା ଯେନ୍ ବିସାଲ ଅଁଚଲନେ ଲୋକ୍ କହେସନ ଭିନେ ଭିନେ ଲୋକ୍, ଭାନେ ଭିନେ ଜାତିର୍ କମ୍ ବେସି ତାଁକର୍ ଶିକ୍ଷା ଦିକ୍ଷା, ଇମାନେ ସବୁ ଗୁଟେ ଭାସା ନାଇଁ କହନ୍ । ଯେ ଜାର୍ ଭାସା କହେସନ୍ । ଲୋକ୍ ଅଛନ୍ ପାଁଚସହ ହଜାରେ ସବଦଥି ବଁଚି ଯାଏସନ୍ ତାଁକର ପୁରା ଜୀବନ । ଲୋକ୍ ଅଛନ୍ ହଜାର୍ ହଜାର୍ ସବଦ ଥାଇକରି ବି ଉଁଧୁଗୁପୁ

ଲାଗୁଥିସି, ନୂଆଁ ସବଦ ଖୁଜୁଥିସନ୍ ମନର୍ କଥାର କହେବାକେ । ଇ ସଭେଁ କୁସଲି ଭାସା ଏକା କହେସନ୍ । ହେନ୍ତା କେତେଟା ଜାଏତ୍ ଅଛନ୍, ତାଁକର ଭିତରେ ଅଲଗା ଗୁଟେ ଭାସା କହୁଥିଲେ  ବି ଉନ୍‌ଜିଆ ଲୋକ ଦେଖଲେ କୁସ୍‌ଲି ଭାସାନେ ଏକା କଥାହେସନ । ସୁଁଦରଗଡ଼ ନୁ କୋରାପୁଟ ତକ, ବଉଦ ନୁ ବେଁଦରା ନୁଆଁଗଡ଼ ତକ୍ ଇ ବିସାଲ ଭୁଖଁଡ଼ର ଭାସା ସବୁଠାନେ ସବୁବେଲେ ସମାନ ନାଇଁନ କି ନାଇଁଥାଇ । ହେଲେ ଗୁଟେ ଭାସାତାତ୍ତ୍ୱିକ ନିୟମର ବଁଧନନେ ଅଛ୍‌ନ, ଗୁଟେ ସାଁସକୁରତିକ ରସି ନ ବଁଧା ହେଇଛନ୍ । ଭାସା ଆର ସଁସକୁଗୁତି ଜାଏତ୍ ଗଢ଼ବାର୍ ଦୁଇଟା ମୁଲ୍ ଉପାଦାନ । ହେନ୍ତା ଦେଖଲେ ସଁସକୁରତି ଭାସା ବନାସି ଆର୍ ଭାସା ଏକା ସଁସକୁରତିକେ ଧରି ରଖସି । ଆମେ ସଭେ ଭାସାର ଗୁଟେ ଜଗତ୍ ନେ ବଁଚୁଛୁଁ । ଆମର ଗ୍ୟାଁନ୍, ଧିଆନ, ଆଘର ବେଭାର ଇ ସବୁ ଭାସା ଭିତରେ । ଭାସା ନି ଥିଲେ ସବୁ ଅଁଧାର୍ ।ମାଟିର ସଁଗେ, ପରକ୍ରୁତିର ସଁଗେ ଲଢ଼ିକରି ଇନର୍ ଲୋକ୍ ଜେନ୍ ଅନୁଭବ ଦୁରାକ କମାଲେ, ତାର ସବଦ ରୁପ ହେଉଛେ ଆମର ଇ ଭାସା । ଗୁଟେ ଗୁଟେ ସବଦ ଭିତରେ ହେଥିର ଲାଗି ଅଛେ କେତେ ହଜାର ବଛରର ଚିନ୍‌ହାଁ । ଆମର ସଁସକୁରତିର ଗୁଟେଗୁଟେ ସୁରତା । ହଠାତ୍ ଦିନେ ଇଟା ନାଇଁ ହେଇଯାଇ । ସବଦ୍ ଆର୍ ଅର୍ଥର ଇ ଜୁରାଜୁରିରୁପ୍ ଇସ୍ୱର ପାର୍ବତି ହେଇକରି କେତେ ଯୁଗ ହେଲା ମୁନୁଁସର ଟୁଡ଼େଁ ପୁଜାପାଇ ଆଉଛନ୍ । ସବଦ ବ୍ରହ୍ମ ହେଇ ଜାଇଛନ୍ ।

କୁସଲି ଭାସାର ମୁଲ୍‌ଜିବନ୍ ହଉଛେ ତାର୍ ସବଦ୍ । ସବଦ୍‌ମାନ୍‌କୁ ନେଇକରି ଗୁଟେ ଭାସା ବଁଚ୍‌ସି । ସବଦ୍ ଏକା ସବୁଠାନୁ ଛୋଟ୍ ଅରଥର୍ ଏକକ । ଆମର କୁସଲି ଭାସାର ହଜାର୍ ହଜାର୍ ସବଦ୍ ଅଛେ । ପାଖ ପଡ଼ିସାର୍ ଭାସାନୁ ପୁରା ଅଲଗ୍ । ଏତ୍‌କି ଅଲଗ୍ ଯେ ଆମର୍ ଭାସାର ସବଦ୍‌ମାନ୍‌କେ ଦୁସ୍‌ରା ଭାସାର୍‌ଲୋକ୍ ଆମ୍ ବଏଲେ ଲିମ୍ ବୁଝବାର୍ ବି ନଜିର ଅଛେ । ଇ ସବଦମାନେ କେନୁଁ ଆଏଲେ ? କେଭେ ଆଏଲେ ? ଇଟାକେ ଏକା ଆଝିର୍ କୁସଲି ଭାସାର୍ କାଏଲ୍ ବଲିକରି ଆମେ ଆଲୋଚନା କରମା । ହେନ୍ତା ସବଦ୍ କେ ଜୁଡ଼୍‌ବାର୍ ନିଅମ ନୁଆଁ ସବଦ୍ ବନାବାର୍ ନିଅମ ଆମେ କେନୁଁ ପାଏଁଲା ? ଇ ସବୁ କଥା ଭି କୁସଲି ଭାସାର ଗଲାକାଏଲ ।

ଏତ୍‌କି ସହ ବରସ୍‌ନେ ଆଏଜ ଆମେ ଜେନ୍ ଭାସା କହୁଛୁଁ ତାର୍ ବିକାସ, ପ୍ରସାର ଆଗ୍‌କେ ବଢ଼ି ଏଭେଏଭେ ଇ ଭାସାକେ ଆଇଥିବାର ସୁବିଧା, ଅସୁବିଧା ବି ଆଲୋଚନା କର୍‌ମା, ଯାହାକେ ଆମେ ବଲମାଁ କୁସଲି ଭାସାର୍ ଆଏଜ୍ ।

ବଇଦିକ୍ କାଲୁଁ, ଇତିହାସର୍ ଆଘୋନ୍ନୁଁ, ଭାରତର ଅଧିବାସିମାନେ ମନର ଭାବ୍ କହେବାର୍ ଲାଗି ଛାତିନୁ ଧୁକା ବାହାର କରିକରି ଟଁଟି ଜିଭ, ଦାଁତ୍, ଟଁଡ୍ ନେ ଛେକିକରି, ପିଟିକର୍ଚି ଆର୍ ଆର୍ ନିୟନ୍ତଣ କରିକରି ସବଦ୍ ତିଆରି କରୁଥିଲେ । ଇ ସବଦ୍‌ମନ୍‌କୁ ଗୁଟେଗୁଟେ ଭାବ୍, ଗୁଟେଗୁଟେ ଅରଥ୍ ନିଜର ସଁସକୁରୁତି ଅନ୍‌ସାରେ ଦଉଥିଲେ । ହେଥିର୍‌ଲାଗି ଭାରତର୍ ସବୁ ଅଁଚଲ ସବୁ ସବ୍‌ଦର ସମାନ୍ ଅରଥ୍ ନାଇସେ ଭିନ୍ ଭିନ୍ ଜନ୍‌ଯାତି ତାଁକର୍ ସଁସକୁରତି ଅନୁସାରେ ସବଦ୍ ଆର୍ ଅରଥକେ ଜୁଡୁଥିଲେ । କଁଧ ଆର୍ ସଁଅରା, ଗଁଡ୍ ଆର୍ ବିଁଝାଲ, ପରଜା ଆର କୁଡ଼ା ଇ ସବୁ ଜନ୍‌ଜାତିର ଭାସା ଅଲଗ ଅଲଗ । ଆର୍‌ଯ୍ୟାବରତର ଭାସାକେ ତ ପାଣିନି ନିୟମନେ ବାଁଧି କରି ସଁସକୁରୁତ୍ କରିଦେଲେ ହେଲେ ଇ ଭାସାମାନ୍‌କର୍ ଅଲିଖିତ ବ୍ୟାକରଣ ଟୁଡ଼େଁ ଟୁଡ଼େଁ ଚାଲି ଆସ୍‌ଲା । ଇ ଭାସାମାନ୍‌କର୍ ପ୍ରଭାବନେ ବଇଦିକ୍ ସଁସୁକୁରୁତ୍ ନୁ ଜନମ୍ ନେଲା, ଭିନେ ଭିନେ ଅଁଚଲେ ଭିନେଭିନେ ପ୍ରାକୃତ । ଇ ପ୍ରାକୃତ ମନେ ବି ଆଗୁଆଗୁ ଭାଷା ଜନ୍‌ଜାତି ସାଁଗେ ମିସିଲେ । କେନ୍ କେନ୍ ଜନ୍‌ଯାତିର ଜହ ପ୍ରଭାବ ରହେଲା କେନେକେନେ ଜନ୍‌ଯାତିର୍ ଭାସା ଆରୁ ଆର୍ଯ୍ୟମାନ୍‌କର୍ ଭାସା ମେସିମେସି ହେଇ ଭାରତ୍‌କେ କେତ୍‌ନି କେତେ ଭାସାର୍ ଗୁଟେ ଅଦ୍‌ଭୁତ୍ କ୍ଷେତ୍ର କରିଦେଲା ।

ଆଝିର୍ ଉଡ଼ିଆ, ବଁଗଲା, ଅହମିଆଁ, ମଇଥିଲି, ଭୋଜପୁରି, କୁସଲି ଇ ଭାସା ମାନେ ଦିନ୍‌ଥିଲା ମାଗଧି ପ୍ରାକୃତ୍ ନାଥି ଚିହ୍ନା ପଡୁଥିଲେ । ଉଡ଼ିଆ, ବଁଗଲା, ଅହମିଆଁ ନେଇକରି କେତେ ଲୋକ ବଏଲେ ଇଟା ଅରଧ ମଗଧି । ଗୁଟେ କଥାହେଲା ଅସ୍‌ଟମ ସଦାବଦିନୁ ଦୁଆଦସ ସତାବ୍‌ଦି ଭିତ୍‌ରେ ଇ ଭାସାମାନେ ନିଜର ନିଜର୍ ଅସ୍ମିତା ଖୁଜ୍‌ବାର ଆରହମ କଲେ, ଆର ଝନେ ଆର୍ ଝନେ କରନୁ ଦୁରେଇଗଲେ । ହେଥିର, ଲାଗି ଚର୍ଯ୍ୟାଗିତିକା କେ ଦେଖିକରି ଇ ସମସ୍ତେ ବଲସନ୍ ଇଟା ଆମର ଭାସାର ପହେଲା ରୁପ । ଚର୍ଯ୍ୟାଗିତିକାର ଭାସାନେ ଯେନ୍ ବ୍ୟାକରନ ଅଛେ ତାର

ନିୟମ ବଡ଼ା ଢ଼ିଲା । ସେଥିରଲାଗି ସଭେ ନିଜର ଭାସାକେ ସେନେ ଦେଖି ପାରସନ୍ । ଆର୍ ଚର୍ଯ୍ୟାଗତିକାନେ ଭରତି ହେଇଛେ ସଁସ୍କୁରୁତ ମୁଲକ ସବଦ ଯେନ୍‌ଟା ଇସବୁ ଭାସାନେ କମ ବେସି ଅଛେ ଏକା । କାଁଏ କରିକି ଆସାମ୍ ନୁ ଅଁଧାରଗତକ୍, ମହାରାସଟର ନୁ ମଗଧ୍ ରାଢ଼ ତକ୍ ଇ ସବୁ ଅଁଚଲେ ଇ ଜନଜାତିମାନେ ଅଲପ୍ ବହୁତ ଅଛନ୍ ଏକା । ଫେରବି ଯେନ୍ ବଉଧ ଗୁରୁମନେ କିଏ କେନେ ରହୁଥିଲେ ବି, ସାରା ପୁରୁବ୍ ଅଁଚଲନେ ସେମାନେ ଧରମ୍ ପ୍ରଚର କରୁଥିଲେ । ତାଁକର ଭାସାର କାଏଁ ଠିକ୍ ଠିକ୍‌ନା । ହେଥିରଲାଗି ଚର୍ଯ୍ୟାର କଥା ଛାଡୁନ ।

ଦୁଆଦସ ସତାବ୍‌ଦି ତକ୍ ଯେନ୍ ତମ୍ପା ପଟା, ସିଲାଲେଖ ଇ ଅଁଚଲେ ମିଲୁଛେ ସେଟା'ତ ମୁଲୁଁ ସଁସକୁରୁତ୍ । କେନେ କେନତା ଗୁଟେ ଦୁଇଟା ସବଦ୍ ରହିଯାଇଛେ । ଇତାକେ ନେଇକରି ଇ ଭାସାର ଇତିହାସ ନାଇଁ ଲେଖିହୁଏ । ଦ୍ୱାଦସ ସତାବ୍‌ଦିନୁ ପଁଚଦସ ସତାବ୍‌ଦି ତକ୍ ଯେତେବେଲେ ଉଡ଼ିଆ, ବଁଗଲା, ଅହମିଆଁ ଅଲଗ୍ ଅଲଗ୍ ହେଲା, ସେତ୍‌କି ବେଲେ ଏକା କୁସ୍‌ଲି ଭାସା ଅଲଗ୍ ହେଲା । "ଡ, ଢ, ଣ, ଳ" କେ ଉଡ଼ିଆ ଧରିରଖିଲା ବେଲକେ ବଗଁଲା, ଅହମିଆଁ ଆର୍ କୁସଲି ଭାସାନେ ଇ ଚରିଧ୍ୱନି ଲୋପ୍ ପାଇଗଲା । ହେନ୍‌ତା ଦେଖିଲେ କୁସଲି ଭାସାର ସେତକି ବେଲେ ଅଧିକ ପାଖେଥିଲା ଅହମିଆଁ ଆର୍ ବଁଗଲା । ଇ ଦୁଇ ଭାସାନେ ବି ସବଦର ସେସେ 'ଅ' ନାଇଁ ରହେ । ଙ, ଞ ନୁ ମ୍ବ ତକ୍ ଇ କୁଡ଼େଟା ଯୁକ୍ତାକ୍ଷର ଚଁଦରବିନ୍ଦୁ ଉଚାରନ୍ ହେସି । ଇ ସବୁ ଭାସାନେ କ୍ରିୟାପଦ ଗଠନ୍‌ନେ ଅନ୍ତି, ଅନ୍ ହେଇଯାଏସି । ଇ ସବୁକଥା ବଂଗଲା, କୁସଲି ଆର୍ ଅହମିଆନେ ସମାନ୍ । ହେଲେ ସେତ୍‌କିବେଲର୍ ଇତିହାସ ଏକ କୁସଲି ଭାସାକେ କରିଦେଲା ଗୁଟେ ତଥାକଥିତ୍ ଉପଭାସା ଆର ବଁଗଲା ଅହମିଆଁ ହେଇଗଲା ଗୁଟେ ଗୁଟେ ଭାସା ।

ଦୁଆଦସ ସତାବ୍‌ଦିନୁ ପଁଚଦସ ସତାବ୍‌ଦି ତକ ଯଯାତି ନଗର ଆର୍ ଅଭିନବ ବିଡ଼ାନାସି କଟକ ହେଲା ପୁରବ ଭାରତର ଗୁଟେ ବଡ଼ କ୍ଷମତା କେନ୍ଦ୍ର । ସୋମବଂସି ରଜାମାନେ କୁସଲି ଭାସା ଆର୍ ସଁସ୍କୁରତି ଧରି କରି ଉପକୁଲ ଅଁଚଲକେ ତ ଗଲେ । ଦିନୁ ଦିନ୍‌କେ ସେନର ଉଡ଼ିଆ ଭାସାନେ ଆର ସଁସ୍କୁରତିନେ ପ୍ରଭାବିତ

ହେଇକରି ଭୁଲି ଭୁଲି ଗ୍ଭଲ୍‌ଲେ ତାଁକର ନିଜର ଭାସା ଆର୍ ସଁସକୁରତିକେ । ଆଏଝ, ପଞ୍ଚଦସ ସତାବ୍‌ଦିର ସାର୍‌ଲା ମହାଭାରତ୍‌ନେ କି ଦ୍ୱାଦସ ସତାବ୍‌ଦିର କେନ୍ ତମ୍ବାପଟାନେ କେନ୍ କୁସଲି ଶବଦ୍ ଗୁଟେ ଦେଖ୍‌ଲେ ଆସ୍‌ଚର୍ଯ୍ୟ ହେବାର କିଛି ନାଇଁନ । ଇସବୁ ଇନୁ ସୋମବଂସି ରଜାମନେ ଧରିକରି ଯାଇଥିବାର ସବଦ । କେତେଦିନ୍ ଚଲିଛେ, ପଛେ ପଛେ ହଜି ହଜି ଯାଇଛେ । ଜଗନ୍ନାଥ ଦାସଙ୍କର ହାତେ ଯେତେବେଲେ ଉଡ଼ିଆ ଭାସା ନୁଆଁ ଗୁଟେ ରୁପ୍ ପାଏଲା ସଁସ୍‌କୁରୁତ୍ ଆର ସେ ଅଁଚଲର ଭାସାକେ ନେଇକରି ଗୁଟେ ମାନକ (Standard) ଭାସା ତିଆରି ହେଲା ସେତ୍‌କି ବେଲେ ଇ ଅଁଚଲନୁ ଯାଇଥିବାର ସବଦ ସବୁ ଉଡ଼ିଆ ଭାସା ଗାଏଜନୁ ଗୁଟେ ଗୁଟେ କରି ଅପସରି ଗଲା । ହେଥିର୍ ଲାଗି, ସୋମବଂସି ରଜାମାନେ ଆର୍ ସେ ସମିଆର୍ ଇତିହାସ ଏକା ଇ ଭାସାକେ ତଥାକଥିତ ଉପଭାସା ଆର ଅଲିଖିତ କରି ରଖିବାର ଲାଗି ଦାୟି । ଦ୍ୱାଦସ ସତାବ୍‌ଦି ବେଲୁ ଏକ ଇ ଅଁଚଲ ଗୁଟେ ସାଁସ୍‌କୁରତିକ୍ ଉପନିବେସ୍ ହେଇଗଲା । ଇନର ଭାସା ସଁସକୁରତି ଆର୍ ସ୍ୱାଭିମାନ କେ ଦିଆଗଲା ଗୁଟେ ନିଝ ଦର୍‌ଜା । ସେଟା ଗ୍ଭଲିଛେ ଯେ ଗ୍ଭଲିଛେ ।

ଇନର ଭାସାନେ ଗୁଟେ ସାରସ୍ୱତ ସ୍ୱିକୃତି ମିଲିଥିତା କି କାଣା ଯେ ଆମର ଗୁଟେ ଲିପି ଆମେ ଅପନେଇ ନାଇଁ ପାରି ଇ ଆଠ୍‌ସହ ବରସ ଭିତରେ । କିଏ କିଏ କହେସନ୍ ନରସିଁହନାଥର ସିଲାଲେଖର ଉଡ଼ିଆ ଲିପି ଆଏଜ୍ ତକ୍ ମିଲିଥିବା ଉଡ଼ିଆ ଲିପିର ପାରଚିନ୍ ନମୁନା । ହେଲେ ସେମାନେ ଭୁଲି ଯାଏସନ୍ ଯେ ବଇଜଲ ଦେବ୍ ନରସିଂନାଥ ଆର ହରିସଁକର କେ ସୈବ, ସାକ୍ତ, ବଇସନବ ଆର ଇ ଅଁଚଲର ଜନ୍‌ଜାତ ମାନଙ୍କର ଦେବ୍‌ତାମାନକୁ ମିସେଇ କରି ବନାବାକେ ଗ୍ଭହୁଁଥିଲେ ଗୁଟେ ନୁଆଁ ସାଁସ୍‌କୁରୁତିକ କେନ୍ଦ୍ର । ଇତାର ଆଦର୍ସ ଥିଲା ପୁରୁସୋତମ ପୁରି । ବଇଜଲ ଦେବ୍ ସେ ଦିନୁ ଯେନ କିଂବଦନ୍ତି ସବୁ ତିଆରି କଲେ ସେଥିବି ପୁରିଜୁଡ଼ି ହେଇଗଲା । ଆମର ରମାଇ ଦେଓ ବି ପୁରି ରଜାର ସାଢ଼ି ସିର୍‌ପା ପାଇକରି ଗହଗହ ମହମହ ହେଲେ । କେନ୍‌କେନ୍ ଇତିହାସନେ ଅଛେ ପୁରି ଆର ଖୋର୍‌ଧାର ଗଜପତି ବଁସ ସାଁଗେ ପାଟନାର ରାଜ ବଁସର ବିହାବରପନ୍ ଚଲୁଥିଲା । ଇସବୁ କଥାକେ ଖାଲି

ଇତିହାସ ବହିର କଥା ନାଇଁ ଭାବୁନ୍ । ଟିକେ ଭାବୁନ୍ ସେ ଭିତରେ ଥିବା ସାଁସକୁରୁତିକ ବିନିମୟର କଥା, ଟିକେ ଭାବୁନ୍ ରାଜନିତିକ୍ ସତ୍ତାର ସିରକୁରୁତିର କଥା । ଇ ଅଁଚଲେ ଋଲିଥିବାର ସାମାଜିକ ଆର ଅରଥନିତିର ବ୍ୟବସ୍ଥାନେ ନୁଆଁ ନୁଆଁ ଚତୁର ଆର୍ଯ୍ୟମାନକର କଥା । ଆର ତାର ସାଁଗେ ଭାବୁନ ସେ ଲୋକ୍‌ମନେ ଧରିକରି ଆସିଥିବାର ଭାସା, ତାର ଉଚ୍ଚାପନ୍ ଇ ଅଲିଖିତ ମୁହେଁ ମୁହେଁ ଚଲୁଥିବାର ଭାସାକେ କେନତା ପରଭାବିତ୍ କରିଥିବା ।

ମତେ ଲାଗ୍‌ସି ଆଝିର ଇ କୁସଲି ଶବଦ୍ ଭଣ୍ଡାରକେ ବିଋର କଲେ ଟିକେ ବୈଜ୍ଞାନିକ ପଦ୍ଧତିନେ ଦେଖିଲେ ଇ ଭିତ୍‌ରେ ଗୁରୁଦୁଟେ କଥା ଲୁକିକରି ରହିଛେ । ଝାର, ଜଁଗଲ, ମାଏଟ୍, ପାହାଡ଼, ପରବତ୍ ଗୁଟେ କଥାନେ କହେଲେ ଇ ପରକୁରତି, ସାରାଜଗତ ଇ ବିସେନେ କୁସଲି ଭାସାର୍ ନିଜର ସବଦ୍ ସବୁ ରହିଛେ । ଇ ସବଦ ସବୁ କେନ୍ ସଁସ୍‌କୁରୁତି ନୁ ନାଇଁ ଆନି, ଉଡ଼ିଆ ବଁଗଲା, ଅହମିଆଁନୁ ନାଇଁ ଆନି । ଇ ସବଦ୍ ସବୁକେ ନୁରିଖୁଜି କରି ଆମେ ଏକା ଇ ମାଏଟ୍ ନୁ ପାଇଛୁଁ । ଯଦି ହେନ୍‌ତା ପାଇଥିଲେ ପାଇଥିବା ଉଡ଼ିଆ ବି ବଁଗଲା ବି ଅହମିଆଁ ବି । ସେମାନେ ବି ପାଉନ୍ ଆମର ଇ ସମାନତା ଗୁଟେ ଗୁତରର ବଲି । ହେନ୍‌ତା ବିଋର, ବୁଧି, କଉସଲ, ଅନୁଭବ, ଜିବନ ଦରସନ୍ ବାଗିର ସବଦ ସବୁ ସିଧା ଆମେ ସଁସକୁରୁତ୍ ନୁ ପାଇଛୁଁ । ଇନେ ଯେନ୍ ନାଗାର୍ଜୁନ ଥିଲେ, ଖ୍ରୀଷ୍ଟପୂର୍ବ ପ୍ରଥମ ସତାବ୍‌ଦି ବେଲ୍‌କେ, ତାଁକର ନୁ ଅସ୍ଟମ ନବମ ସତାବ୍‌ଦି ତକ୍ ମହାଯାନି ବୌଧଧର୍ମର ଧାରା ଥିଲା, ତାର ଭାସା ଥିଲା ସଁସକୁରୁତ୍ । ଇନ୍ଦ୍ରଭୁତି, ଲକ୍ଷ୍ମିଁଙ୍କରା ସାନ୍ତିରକ୍ଷିତ ବାଗିର ପଣ୍ଡିତ୍ ମାନେ କାଣା ଇନର ଗାଁ ଗଁଲିର୍ ଲୁକର ସାଁଗେ କଥାନାଇଁ ହଉଥାଇ ? ଯଦି ହଉଥିଲେ କେନ ଭାସାଥି ହଉଥିଲେ ? ଧରମ ପ୍ରଋର କରବାର ଯାର କାମ୍ ସେମାନେ କାଣା ଲୋକ୍‌ମାନକର ଠାନୁ ଦୁରେ ରହୁଥିଲେ ? ଯଦି ହଉଥିଲେ କେନ ଭାସାଥି ହଉଥିଲେ ? ଧରମର ଇ ତତ୍ତ୍ୱମାନଙ୍କୁ ସାଧାରଣ ଲୋକ୍‌କେ ବୁଝଉଥିଲେ କି ନାଇଁ ? ଯଦି ବୁଝଉଥିଲେ ତେବେ ତ ସେ ଦିନୁ ଆମର ଇନର ଭାସାନେ ହଜାର ହଜାର ସଁସକୁରୁତ୍ ଭାସାର ସବଦ୍ ଅଛେ । ଆଏଜ ଜେନ୍‌ଟା କେ ଆମେ ଉଡ଼ିଆ ବଲିକରି ଭାବୁଛୁଁ । ଇ

ସବୁ ସବଦ୍ ହେଥିରଲାଗି ଆପଣ୍ ଦେଖିବେ ବଁଗଲାନେ ଭି ଅଛେ ଅହମିୟାଁନେ ଭି ଅଛେ, ମୈଥଲିନେ ଭି ଅଛେ । କିଏ କହେଲା ଇଟା ସବୁ ଉଡ଼ିଆ ସବଦ୍ ? ପୁରା ପୁର୍ବ ଭାରତର ଲୋକ୍ ଇ ସବଦ୍ ମାନକୁ ସଁସକୁରୁତ୍ ଭାସାନୁ ଛଡ଼େଇ ଆନିଛନ୍ ଆରୁ ବନେଇଛନ୍, ତାଁକର ଜିଭର୍ ବତ୍‌ରେ । ଇକଥା ହୁଏନ୍‌ସାକେ ପଚରେଇ ହେତା, ଯିଏ ହରିସଁକର ନେ ଦେଖିଥିଲେ ଗୁଟେ ବଉଧ ବିହାର । ପଚରେଇ ହେତା ସେ ଚଉରାସି ଝନ ବଉଧ ସିଦ୍ଧ କେ, ଯେନ୍‌ମାନେ ପୁରା ପୁର୍ବ ଭାରତ୍ ବୁଲୁଥିଲେ । ହେଲେ ସାକ୍ଷିଦେବାର ଲାଗି ସେମାନେ ଆର କେନେ ମିଲବେ ?

ପଁଚଦସ, ସୋଡ଼ସ ସତାବ୍‌ଦି ବେଲ୍‌କେ ମହାନଦିର ଚଡ଼େନ୍ ମାଛବାଗିର୍ ଇ ଅଁଚଲନେ ବୈଷ୍ଣବ ଧର୍ମ ଆର, ଗିତ୍ ଭାଗ୍‌ବତ ପୁରାନ୍ ତାଲ୍‌ପତ୍‌ରେ ଲେଖା ହେଇକରି ଆସଲା । ସହର ସବୁ ବସି ଯାଇଥିଲାନ, ନଗର ଜିବନର ଅବସର ବେଲକେ କଟାବାର ଲାଗି ଧରମ୍ ଚରଚ୍ଚ ଆର୍ ସାହିତ୍ୟ ଚରଚା ଦରବାର୍‌କେ ପସି ଆସିଥିଲାନ । ଜନଜାତିମାନେ ଚଢ଼ି ଯାଇଥିଲେନ ପାହାଡ଼ମନକୁ । ସାସନ, ନିଏ ଏନ୍‌ତାକି ପାଠ୍‌ସାଲା ଦେଇକରି ଗୁଟେ ଲେଖାପଢ଼ା ସଁସକୁରତିର ଆରମ୍ଭ ହେଲା । ଇ ରୁପାନ୍‌ତର ବେଲ୍‌କେ ଆମର ଭାସା ହେଲା ଉଡ଼ିଆ । ଚୈତନ୍ୟ ଦାସ ବାଗିର କବିମାନେ ତେଲେଁଗା ଗୋପାଲ ବାଗିର କବିମାନେ ଯୁଗଦାସ ବାଗିର କବିମାନେ ଏନତା କି ଭିମଭୋଇ, ଯିଏ ଯେନେ ବି ଲେଖିଲେ ତାଁକର ଲାଗି ଲେଖବାର ଗୁଟେ ଏକା ବାଟ୍‌ଥିଲା ଉଡ଼ିଆ ଲିପି । ଆର୍ ଉଡ଼ିଆ ଲିପିନେ ଲେଖା ହଉଥିଲା ବଲିକରି ଉଡ଼ିଆ ଭାସାନୁ ଅଲଗ୍ ଲାଗୁଥିବାର୍ ସବଦ୍‌କେ ବଲୁଥିଲାଁ ଆମେ ଇ ଅଁଚଲର ସବଦ୍ । ଆର୍ ବାକିସବୁ ଉଡ଼ିଆ । ଆମେ ନାଇଁ ଜାନି ଇଟା କେନ୍‌ତା କରି ପଢୁଥିଲେ ଲୋକ ସେତେବେଲେ । 'ଦରକାର' ଲେଖିକରି ଲୋକ୍ ଦର୍‌କାର ପଢୁଥିଲେ 'ଲୋକ' ଲେଖିକରି ଲୋକ୍ ପଢୁଥିଲେ କି କେନ୍‌ତା କରୁଥିଲେ କେଜାନି ?

ଇଁରେଜ ସାସନ ହେଲା । ଇଁରେଜ ସରକାର ଇ ଅଁଚଲର ଭାସାକେ ବୁଝବାର ଲାଗି ପହେଲା ଚେସ୍‌ଟା କଲେ । ଉଡ୍‌ବର୍ନ ଫ୍ରେଜର ବାଗିର ସାହେବ୍‌ମାନେ ଠିକ୍ କରି ନାଇଁ ପାର୍‌ଲେ ଇ ଅଁଚଲ ମଧପରଦେସ ନେ ରହେବା କି କଟକ କମିସନର

ଅଧିନନେ ରହେବା । ସେତେବେଲେ ଯେନ୍ ଜନ୍‌ଗଣନା ହେଲା ବୈକୁଣ୍ଠ ପୁଝାରି, ଚନ୍ଦ୍ରସେଖର ବେହେରା ବାଗିର ପଣ୍ଡିତମାନେ ବଏଲେ ଆମର ଭାସା ଉଡ଼ିଆ । ଗାଁ ଗାଁ ବୁଲି କରି ଲୋକ୍‌କେ ବି ମତାଲେ, ଆମର ମାତରୁଭାସା ଉଡ଼ିଆ ବଲି କହ । ସେଦିନୁ ଆଏଜ୍ ତକ୍ କୁସଲି ଭାସା ଉଡ଼ିଆର ଉପଭାସା ହେଇକରି ସରକାରି ଭାବେ ରହେଲା । ଇତିହାସର୍ ଇ କଥାତ ଆପନ୍ ସଭେ ଜାନିଛନ୍ । ଜାନିଛନ୍ ସେଦିନରେ ସତକଡ଼ା ଦୁଇଭାଗ ଲୋକ୍ ଉଡ଼ିଆ ଲେଖିପଢ଼ି ଜାନିଥିଲେ । ଇଟା ଏଭେ ସାଠେ ଭାଗ୍‌କେ ପହଁଚିଲାନ । ଫେର ଜାନିଛନ୍ ଇ ସହେ ବରସର ବିବରତନଥି ଲୁକେ ଭୁଲି ନାଇଁଜାଇ କୁସଲି ଭାସାକେ । ବହି ଲେଖିଛନ୍, ଛାପିଛନ୍, କହିଛନ, ସୁନିଛନ ହେଲେ ସରକାରି ଭାବେ କିଛି ନାଇଁ ହେଇ । ମୁଇଁ କହେମି ଇ ଭାସାର ଜିବନି ସକ୍‌ତିର ପରିକ୍ଷା ହେଇଯାଇଛେ । ଆଠ୍ ସହ ବରସ୍‌ର ହନନ ଭିତରେ ଆଏଜ୍ ତକ୍ ପୁରାଦମ୍‌ନେ ବଁଚିଛେ । ଇଟା ଇ ଭାସାର ଆଏଜ୍ । ଆମର ଦେହେକେ ଆମେ କାଣା କରିପାରମା ଇତାର ଲାଗି । ଆସୁନ୍ ସେଟା ଆଲୋଚନା କର୍‌ମା ।

ଗଲାମାସର ସତର ତାରିଖ, ବଏଲେଁ ଅକ୍‌ଟୋବର ସତର ତାରିଖ ୨୦୦୪ ଦିନ ହିନ୍ଦୁ ପତ୍‌ରିକା ପୃଷ୍ଠାଥି ପ୍ରଫେସର ଡ଼େଭିଡ୍ କ୍ରିଷ୍ଟାଲ, ଗୁଟେ ମଜାକଥା କହିଛନ୍ "ପ୍ରତି ଦୁଇ ହପ୍‌ତାନ ଗୁଟେ ଭାସା ମରୁଛେ । ଆଝିର ପୁରଥିନେ ଇଁଗଲିସ ଯେନ୍‌ଭାବେ ବଢୁଛେ ସାରା ପୁରଥିବିର ଭାସା ହେବାର ଲାଗି, ସେଟା ମୁନୁସ ଜାତିର ଲାଗି ବନେ କଥା ନାଇଁ ସେ । ସବୁ ଭାସା ପୁରଥିବି କେ ବୁଝବାର ଲାଗି ଗୁଟେ ଗୁଟେ ଚେସ୍‌ଟା । ସେ ଭାସା ଲୋପ୍ ପାଏଲେ ସେ ଚେସ୍‌ଟା ବି ଲୋପ୍ ପାଏବା । ହେଥିର ଲାଗି ମୁନୁସ ଜାତିର ଭଲର ଲାଗି ଆମ୍‌କୁ ଭାସା ମାନ୍‌କୁ ବଁଚେଇ ରଖବାକେ ପଡ଼୍‌ବା । ଭାସାକେ ବଁଚେଇ ରଖିବାର ଲାଗି ଦରକାର ଲେଖିରଖିବାର ଆର୍ କହିରଲବାର । ଇଟା ଗୁଟେ ଖରଚିଲା କଥା ବାଗିର ସୁଭୁଛେ, ହେଲେ ଆମ୍‌କୁ କର୍‌ବାକେ ଏକା ପଡ଼ବା । ପ୍ରଫେସର କ୍ରିଷ୍ଟାଲ କଥାର ଇଟା ଅନୁବାଦ୍ ନାଇଁସେ, ସାର କଥା ଆଏ । ତାହେଁରୁ ଯେନ୍‌ଟା କହିଛନ୍ ତାଁକର ଭାସାନେ ଏକା ସୁନୁନ୍, "Here in India we know verywell, the movements to preserve local

identities and languages have been stronger then in any other part of the world. If there is a riot somewhere with people, wanting their language to be given respect, how much is that going to cost and how much could have been saved, if that little bit of money had been put into the situation earlier?" ଇ ସାହେବର୍ କଥାକେ ମଜାକ୍ ନାଇଁ ଭାବୁନ୍ । ଭାସା ଆଏଜ ଗୁଟେ ବିସ୍ଫୋରକ୍ ଆର ବିତରକିତ୍ ବିସୟ ଆଏ । ଗଲା କୁଡ଼େ ବରସ୍‌ତଲେ ଲୋକ୍‌ମାନକର ନିଜର ଭାସା ଆର ସଁସକୁରୁରତିର ଲାଗି ଯେନ ଦୃଷ୍ଟି ଭଂଗି ଥିଲା ବଦଲି ଯାଇଛେ । ଜଗତିକରନ୍ ଆମର୍ ସାଁସକୁର୍‌ତିକ ଅସ୍‌ମିତା କେ ଯେନ୍ ଆହ୍ୱାନ୍ ଦେଇଛେ ସେଥିର ଲାଗି ହଉ କି ଜଗତ୍ ନେ ହଜିଯିବାର, ଭଏ ଲାଗି ହେଉ ମୁନୁସ୍ ଆଏଜ ଭାବୁଛେ ନିଜର ସଁସକୁରତି ଆର୍ ଭାସା ଏକା ତାର ଅସଲ ପହେଚନ୍ । ଯେ ଯେତକି ଉପରକେ ଉଠୁଛେ ତାହାକେ ସେତ୍‌କି ଏକ୍‌ଲା ଲାଗୁଛେ ।

ଆଏଜ ହେଥିର ଲାଗି କୁସଲି ନାଟ, ନାଚ୍, ଗିତ୍, କଥାନି, କବିତା, ଏନ୍‌ତାକି ଆମର୍ ଚଲିଚଲନ୍, ରିତି ରିବ୍‌ମା ଭିତରେ ଆମେ ନୁଆଁ ମହକ୍ ପଉଛୁଁ । ଆର ମୁଇଁ କହିଛେଁ ଇସବୁ କଥା ଆମେ ବୁଝୁଛୁଁ କହୁଛୁଁ ଏନତାକି ଆମେ ଅଲଗ ମନକୁ ବୁଝଉଛୁଁ ଇ କୁସଲି ଭାସାଥି । କୁସଲି ଭାସାର ଜଗତନେ ଏକା ବଢୁଛୁଁ । ଗଲା ହଜାରେ ବରସର ଇତିହାସ କେ ଦେଖ୍‌ଲେ, ଇ କୁଡ଼େ ବର୍‌ସେ ଆମେ ଯେନ୍‌ଟା କରିଛୁଁ ଖୁସ୍ ଲାଗିଯିବା । ସହ ସହ ବହି, ଅଭିଧାନ, ବ୍ୟାକରଣ, ଅଡ଼ିଓ ଭିଡ଼ିଓ କେସେଟ୍ ଭିତରେ ଇ ଭାସାକେ ଧରି ରଖିଛୁଁ । ଯେନ୍‌ଟା ଇତିହାସର ହଜାରେ ବରସ୍‌ଥି ଖୁଜ୍‌ଲେ ବି ନାଇଁ ମିଲୁଥାଇ । ହେଲେ ଇଥି ଭାସାର ଉନ୍‌ନତି ହେଲାକେଁ ? ମତେ ଲାଗୁଛେ ନାଇଁ ହେଇ । ଭାସାର ଉନ୍‌ନତି ଗଦାଗଦା ବହି ନାଇଁ ସେ, ଗୁଟେ ସ୍ୱାଭିମାନି ଜିଭ । ଭାସାର ଉନ୍‌ନତି ସେତେବେଲେ ହେବା ଏନ୍‌ତା ହଜାର୍ ହଜାର୍ ଜିଭ, ଲକ୍ଷ ଲକ୍ଷ ଜିଭ, ଗର୍ବ ସେ ଇ ଭାସା କହୁଥିବେ । ଭାସାର୍ ଉନ୍‌ନତି ସେତେବେଲେ ହେବା ଆମେ ଯେତେବେଲେ ଆସୁଥିବାର ନୁଆଁ ନୁଆଁ କଥାକେ,

ଗ୍ୟାଆଁନ କେ, ସାସ୍ତରକେ ଇ ଭାସାନେ ଚରଚା କରିପାରୁଥିମା । ନୁଆଁ ନୁଆଁ ସବଦ୍, ନୁଆଁ ଭାବ୍ ଭାସାନେ ତ ମିସ୍‌ବା ଏକା । ହେଲେ ନଦିର୍ ପାଏନ୍ ବାଗିର ଭାସା ସବୁ ମଏଲା କେ ଖଁଡ଼ିକେ ଅଜେଇ କରି ଝଲ୍ ଝଲ୍ ବହି ଯଉଥିବାର କଥା । ଆମର ଭାସାର୍ ସେ ଗୁନ୍ ଥିଲା, ହେଥିର ଲାଗି ହଜାରେ ବରସ ହେଲା ବଁଚି ଆଇଛେ । ଏଭେ ଯେତେବେଲେ ଆହରନ୍ ଆର୍ ଆକରମନ ଦୁଇ ଆଡୁ ହେବା ସେତେବେଲେ ଭାସାକେ ତାର ମନକେ ଛାଡ଼ି ଦେଲେ କେଜାନେ କାଁଣା ହେବା । ଆଏଜ୍ ଦରକାର, ଗୁଟେ Language planning । ଇ ଭାସା ଇସ୍‌କୁଲେ କେତେ ଶ୍ରେଣିତକ୍ ପଢ଼ାହେବା, ଇ ଭାସାର ମାନକ୍ ରୁପ କାଣା ହେବା, ଇ ଭାସାର ଯେନ୍ ନିଅମ୍ ରହିଛେ, ତାର ସ୍ଥିତି ସ୍ଥାପକତା (Elasticity) କେତେ ? କେତେ ମେସାମା କେନ୍ ଭାସାନୁ, କେତେ ଛାଡ଼ମା, ଯେନ୍‌ତା ଅସ୍‌ଟମ ସତାବ୍‌ଦି ତକ ଇ ଅଁଚଲର ଲୋକ୍‌ମାନେ ସଁସ୍‌କୁରୁତ୍ କେ ଭାଁଗିକରି ବନେଇଥିଲେ ଦେସଜ୍ ସବଦ୍, ସେନ୍‌ତା ଉନ୍‌ଜିଆ ଭାସାନୁ ଆସୁଥିବାର ସବଦ୍‌ମାନକୁ ଆମର ଭାସାର ବନାମା କେନ୍‌ତା କରି, ଇସବୁ କଥା ଆମ୍‌କୁ ଏକା ଠିକ୍ କରବାରକେ ପଡ଼ବା । ଇତିହାସର ଏନ୍‌ତା ଗୁଟେ ସଂଧି ସମିଆଥି ଆମେ ପହଁଚିଛୁଁ ଯେତେବେଲେ ଆମକୁ ଏକା ଠିକ୍ କର୍‌ବାକେ ପଡ଼୍‌ବା, କାଣା ଆମର ଜିଭେ ଏକା ବିଲେଇ ଦେମା ଇ ଭାସାକେ ? କି ନୁଆଁ ଜିଭ ମନ୍‌କୁ ଇ ଭାସା ସିଖାମା ? ଆଏଜ୍ କେ ତିନ୍ ବରସ୍ ତଲେ ସମଲପୁରର ·ଲୋକ୍ ଉସବନେ ମୁଇଁ କହୁନ୍ କହୁନ୍ କହିଦେଇଥିଲି ଆମେ ଇ କାମ ନାଇଁ କରିପାର୍‌ଲେ, ଆମର ପୁଓ ନାତିମାନେ ଏନ୍‌ତା ଗୁଟେ ଆଲୋଚନାଚକର୍ କର୍‌ବେ, ଆର ଆଲୋଚନା କରବେ : *କୁସଲି ବଲି ଗୁଟେ ଭାସା ଥିଲା । ସେଥି ଗୁରଦୁ ଗିତ ବହି, ନାଟ ବହି, ଲେଖା ହେଇଛେ । ହେଲେ ଏଭେ ସେ ଭାସା କିହେ ନାଇଁ କହେବାର ।* ଆଏଜ ଯେନତା ଆମେ ପାଲି ପରାକୃତ, ସଁସକୁରୁତ, ଲାଗି କହୁଛୁଁ । ଭଗବାନ କରୁନ୍ ହେନ୍‌ତା ନାଇଁହଉ । ଇତାର ପରେ ଯେଭେ ଆଲୋଚନାଚକର୍ ହେବା, ଲୋକ କହୁନ୍: ଥରେ ବଲାଁଗିରର ଲୋକମାନେ ବସିକରି ଠିକ୍ କଲେ କୁସଲି ଭାସା କେନ୍‌ତା ହେବାର କଥା । ଆର୍ ସେଦିନୁ କୁସଲି ଭାସା ବଢ଼ିବଢ଼ି ଗଲଲା ।

ମାଏନ୍ତା ଆଗୟାଁମାନେ, ଇସବୁ କଥା କହେଲା ବେଲକେ ନାଇଁ ଭାବୁନ୍ ଭାସାକେ ବଁଉବାରଟା କାହାର ଝନେକର କାମ । ହେଲେ ଆମେ ସଭେ ନାଇଁ ମେସ୍‌ଲେ ଆଲୋଚନା ସଭାନେ ଭାସା ନାଇଁ ବଁଚେ । ସେସେ ଦୁଇଟା କଥା କହିକରି ଇ ଆଲୋଚନା କେ ସେସ୍ କରମା, ପହେଲା କଥା ହେଲା ଇସବୁ ମୁଇଁ ଯାହା କହେଲି ଇଟା ମୋର ନିଜର ଖାଲି ବିଉର ନାଇଁସେ ଇନୁ ସେନୁ ପଢ଼ିଥିବାର୍ କଥା । ସେ ବହି ଆର୍ ଲେଖକ ମାନକର୍ ନାଁ ନାଇଁକହି ଇ ଆଲୋଚନା କେ ସରଲ କର୍‌ବାର୍‌ଲାଗି । ସେ ଲେଖକମାନକର ଠାନେ ମୁଇଁ କୃତଗଁ୍ୟ । ଆର୍ ଦୁତିଅ କଥା ହେଲା ଆପନ୍‌ମାନକର ଠାନେ ବି କୃତଗଁ୍ୟ । ଶୁନିଛନ୍ ମନଯୋଗ ଦେଇକରି, ଏତ୍‌କି ସମିଆଁ, ହେଲେ ମତେ ଅଧିକ ଗହକି ଲାଗ୍‌ବା ଯଦି ଇ ବିସୋନେ ଆପନ୍‌ମାନକର ବିଉର ଇ ସଭାନେ ରଖବେ । କେନ୍‌ସି ଆଲୋଚନା ସଭାନେ ସଭେ ତାଲିପିଟି କରି ହଁ କରିଦେଲେ ଗୁଟେ କଥା ମରିଯାଏସି, ବଁଚସି ସେତ୍‌କି ବେଲେ, ଯେତେବେଲେ ଲୋକ୍ କାଁଏ କରି ଏନ୍ତା ହେଲା, ପଚ୍‌ରା ଉଚ୍‌ରା ହେସନ୍ । ସେସେ ଆପନ୍ ମାନକୁ ଅସେସ୍ ଧନ୍ୟବାଦ୍ ।

*(ବଲାଙ୍ଗିର ଲୋକ ଉତ୍‌ସବ ୨୦୦୪ ଆଲୋଚନା ଚକର ଥିଁ ୭ ନଭେମ୍ବର ରଏବାର ଦିନ ପଠିତ୍)*

# ଓଡ଼ିଆ କାବ୍ୟ ଜଗତକୁ ପଶ୍ଚିମ ଓଡ଼ିଶାର ଦାନ

ଓଡ଼ିଆ କାବ୍ୟ ପରମ୍ପରା ପ୍ରାୟ ହଜାରେ ବର୍ଷର । ଚର୍ଯ୍ୟାଗୀତିକା ଠାରୁ ଆଜିଯାଏଁ ଅଗଣିତ କାବ୍ୟ କବିତାର ବିଶାଳ ଭଣ୍ଡାରରେ ଏହା ସମୃଦ୍ଧ । ଅନେକ ସୁଲିଖିତ ଅନେକ ଅଲିଖିତ କବିତା ଏ କାବ୍ୟ ପରମ୍ପରାକୁ ଗଢ଼ି ତୋଳିବାରେ ସହାୟକ ହୋଇଛନ୍ତି । ବିଭିନ୍ନ ସ୍ଥାନ, କାଳ ଓ ପାତ୍ର ସାହିତ୍ୟ ଉପାଦାନ ହୋଇ ଆଜି ଅମର ହୋଇଛି । ଅଥଚ ହଜାରେ ବର୍ଷର ଓଡ଼ିଆ କାବ୍ୟ ଜଗତର କଥା ଆଲୋଚନା କଲେ ଅଦ୍‌ଭୂତ ଐକ୍ୟତାନ ଶୁଣି ହତାଶ ଲାଗେ । ହଜାରେ ବର୍ଷ ପରେ ବି ଆମର ଯେପରି ବେଶି କିଛି ପରିବର୍ତ୍ତନ ଘଟିନି । ଓଡ଼ିଶାରେ ଥିବା ବିଭିନ୍ନ ଅଞ୍ଚଳର ସାଂସ୍କୃତିକ ବୈଚିତ୍ର୍ୟ ଯେପରି ଓଡ଼ିଆ କାବ୍ୟ ଜଗତର ଉପାଦାନ ହେବାପାଇଁ ମନାଅଛି । ଏ ପ୍ରସଙ୍ଗରେ ଆଜିଠୁ ପ୍ରାୟ ଚାଳିଶ ବର୍ଷ ତଳେ କବି ରମାକାନ୍ତ ରଥ କହିଥିବା କଥା ଏବେ ମନେପଡ଼େ । "ଆମର ସାହିତ୍ୟକ ଚେତନା ପ୍ରାୟତଃ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ସଂସ୍କୃତି ଉପରେ ପ୍ରତିଷ୍ଠିତ, ତାହା ନିଶ୍ଚୟ ବିଶାଳ, କିନ୍ତୁ ବସି ଖାଇଲେ ନଈବାଲି ସରେ ଓ ଓଡ଼ିଶାର ଅନ୍ୟାନ୍ୟ ସଂସ୍କୃତି ମଧ୍ୟ ଅଛି । ଆଦିବାସୀମାନଙ୍କର ସଂସ୍କୃତି ସମ୍ପର୍କରେ ଆମର ବୁଝାମଣା ଖୁବ୍ କମ୍ ଓ ବର୍ତ୍ତମାନ ବୁଝା ନ ଗଲେ ତାହା ପୁରାପୁରି ବିଲୁପ୍ତ ହୋଇଯିବାର ଭୟ ଅଛି । ଅଭିଜ୍ଞତାର ପରିସର ବିସ୍ତୃତ ହେଲେ ବ୍ୟକ୍ତିଗତ ଅଭିବ୍ୟକ୍ତି ଅପେକ୍ଷାକୃତ ସହଜସାଧ୍ୟ ହେବ । କାରଣ ଅଭିଜ୍ଞତାର ସାହିତ୍ୟିକ ରୂପାନ୍ତର ପାଇଁ ସାମଗ୍ରୀ ସହଜରେ ମିଳିପାରିବ ।"(କେତେଦିନର: ପୃଷ୍ଠ ବନ୍ଧ) ଓଡ଼ିଆ କାବ୍ୟ ସାହିତ୍ୟକୁ ପଶ୍ଚିମ ଓଡ଼ିଶାର ପ୍ରଥମ ଦାନ ବୋଧହୁଏ ଏଇ ଅପର ସଂସ୍କୃତିର ପରିଚୟ ସୃଷ୍ଟି ପାଇଁ ପ୍ରୟାସ ।

ଓଡ଼ିଶା କାବ୍ୟଜଗତକୁ ପଶ୍ଚିମ ଓଡ଼ିଶାର ଦାନ କଥା ଭାବିଲେ ଆଉ ଏକ କଥା ମନକୁ ଆସେ । ଆଦିବାସୀ ସଂସ୍କୃତିର ଚରଣଭୂମି ଆମର ଏଇ ପଶ୍ଚିମ ଓଡ଼ିଶା । ଇଂରାଜୀ ଶିକ୍ଷାର ବିକାଶ ଘଟିବା ଯାଏଁ ଏକ କିମ୍ବା ଦୁଇ ଶତାଂଶ ଲୋକଥିଲେ ଓଡ଼ିଆ ଲେଖିପଢ଼ି ଜାଣିଥିବା ଶିକ୍ଷିତ । ଅଲିଖିତ ଆଦିବାସୀ କାବ୍ୟ ପରମ୍ପରା ଓ ସଂସ୍କୃତି ସହ ସଂଘର୍ଷ କରୁ କରୁଁ, ସହାବସ୍ଥାନ କରୁଁ କରୁଁ ଏ ଅଞ୍ଚଳରେ ନୂଆଁ ଲିଖିତ ଓଡ଼ିଆ କାବ୍ୟ ପରମ୍ପରାଟିଏ ସେମାନେ ଗଢ଼ିପାରିଲେ ନାହିଁ । ମୂଳ ଅଞ୍ଚଳରୁ ଆମଦାନୀ ହୋଇଆସୁଥିବା ଓଡ଼ିଆ ସାହିତ୍ୟ ପଢ଼ି ଓ ଶୁଣି ହିଁ ସେମାନେ ସନ୍ତୁଷ୍ଟ ରହିଲେ । ନୂଆଁ ମାଟିର ମହକରେ ମୁଗ୍ଧ ହୋଇ ଅପର ସଂସ୍କୃତିର  ମଣିଷ ସହ, ଅନୁଦାନର ପ୍ରକୃତି ସହ ଲଢ଼ି ଯେତିକି ପାଇଲେ, ଛୋଟ ଛୋଟ ଅଲିଖିତ ଲୋକଗୀତ ଗାଇ ବିତାଇ ଦେଲେ ଜୀବନ । ଏବେ ସେ ସବୁକୁ ସାଉଁଟି, ସେଠି ସଂଘର୍ଷ ଓ ସହାବସ୍ଥାନ ଚିହ୍ନିତ କରି, ଓଡ଼ିଆ କାବ୍ୟ ଜଗତକୁ ପଶ୍ଚିମ ଓଡ଼ିଶାର ଏହା ହିଁ ଦାନ କହିବା ହେବ, ନିହାତି ଅବାନ୍ତର ।

ଏବେ ପଶ୍ଚିମ ଓଡ଼ିଶାର କବି କହିଲେ ପ୍ରଥମେ ମନେପଡ଼ନ୍ତି ଚୈତନ୍ୟ ଦାସ । ସେ ଏ ଅଞ୍ଚଳରେ ଜନ୍ମିଥିଲେ ବିନା ସନ୍ଦେହ । କିନ୍ତୁ ଏ ଅଞ୍ଚଳରେ ରହି ଲେଖିଥିଲେ, ତାଙ୍କର ନିର୍ଗୁଣ ମାହାତ୍ମ୍ୟ, ବିଷ୍ଣୁଗର୍ଭ ପୁରାଣ ଓ ଦେବନାଶନ ପୁରାଣ । ବଙ୍ଗ ଦେଶରୁ ଆସିଥିବା ଶ୍ରୀ ଚୈତନ୍ୟଙ୍କ ଭକ୍ତିଧାରାରେ ପଞ୍ଚସଖା ସାହିତ୍ୟର ଶରୀର ସାଧନ, ପିଣ୍ଡ ବ୍ରହ୍ମାଣ୍ଡବାଦ, ଏମିତିକି ଯୋଗାଚାର କୈନ୍ଦ୍ରିକ ଜ୍ଞାନ ଓ ଶକ୍ତିସାଧନା ପୂର୍ବ ଓଡ଼ିଶାରୁ ଭାସିଗଲା ବେଳେ, ଚୈତନ୍ୟ ଦାସ ଓ ତାଙ୍କପରେ ଚନ୍ଦ୍ରମଣି ଦାସ ହିଁ ତାକୁ ଏ ଅଞ୍ଚଳରେ ସାଇତି ରଖିଥିଲେ । ଭକ୍ତି, ଓଡ଼ିଆ ଜାତିକୁ ଯୁଦ୍ଧଭୀରୁ, ପରାଧୀନ ଓ ଜୀବନୀ ଶକ୍ତିଶୂନ୍ୟ କଲାବେଳେ ଇଂରେଜମାନଙ୍କ ବିରୁଦ୍ଧରେ ସୁରେନ୍ଦ୍ର ସାଏ, ରେଣ୍ଡୋ ମାଝି ଓ ଚକରା ବିଶୋଇଙ୍କ ମହାବିପ୍ଳବ ଏ ଅଞ୍ଚଳରେ ଏଥିପାଇଁ ହିଁ ସଙ୍ଘଟିତ ହୋଇପାରିଥିଲା । ଏ ମାଟିର ଆଉଜଣେ କବିଥିଲେ ଯୋଗୀ ଦାସ । ନୃସିଂହ ମାହାତ୍ମ୍ୟରେ ସେ ଶୈବ, ଶାକ୍ତ, ବୈଷ୍ଣବ ଓ ସର୍ବୋପରି ଆଦିବାସୀ ଧର୍ମର ସମନ୍ୱୟ କରି ଏ ଅଞ୍ଚଳରେ ସଂଘଟିତ ସାଂସ୍କୃତିକ ସହାବସ୍ଥାନର କଥା ହିଁ କହିଛନ୍ତି । ପୁଣି ସାରା ଜଗତର ଉଦ୍ଧାର ପାଇଁ ବ୍ୟାକୁଳ ଭୀମଭୋଇଙ୍କର କଥା ତ ନିଆରା । ସମସ୍ତ ପ୍ରାଣୀଜଗତ

ସ୍ଥାବର ଆଉ ଜଙ୍ଗମ ତାଙ୍କ ପାଇଁ ବୁନ୍ଦାଏ ରୁଧିର, ଫୁଟେ ହିଁ ମାଂସ, ସମସ୍ତ ପ୍ରାଣୀ ଏକାକାର, ଏକ ହିଁ ଶରୀର । ତେଣୁ-

'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।'

ଭୀମଭୋଇଙ୍କ ପରେ ଗଙ୍ଗାଧରଙ୍କୁ ଦେଖନ୍ତୁ। ମୁଁ କାରକୁ ଦୂରକୁ ଶ୍ରୀଚରଣରେ ଅର୍ପଣ କରିବା ପାଇଁ ସେ ଅଧିର, ଏ ମଧୁମୟ ସୃଷ୍ଟିରେ ମୁଁ କାର ହିଁ ତାଙ୍କୁ ତାପିତ କରୁଥିଲା ଯେମିତି । ଏ ମାଟିର ଆଉଜଣେ କବି ରାଜେନ୍ଦ୍ର କିଶୋର ପଣ୍ଡା କହନ୍ତି ।

"ଧାନଶୀଷାରେ ଆହୁରି କ୍ଷୀର
ତୁତ୍ ପୋକଟି ଆହୁରି ରେଶମ
ଅରଣି ଭିତରେ ଆହୁରି ନିଆଁ
ଆଖୁ ଭିତରେ, ମହୁ ଭିତରେ ଆହୁରି ମିଠା
ସଲପ ଗଛରେ ଅଧିକ ରସ
ଆକାଶ ଭିତରେ ଆହୁରି ନୀଳିମା ଆହୁରି ଚନ୍ଦ୍ରିକା
ମଣିଷ ଭିତରେ ଆହୁରି ମାନବିକତା
ଭରିଦେ, ଭରିଦେ ବୋଲି ଆଜ୍ଞା ଦେଇପାରିବାନି ସିନା
ପ୍ରାର୍ଥନା କରବା ଆସ ।"

ମଣିଷ ପ୍ରତି ଅହେତୁକ ପ୍ରେମ ହିଁ ଓଡ଼ିଆ କାବ୍ୟଜଗତକୁ ପଶ୍ଚିମ ଓଡ଼ିଶାର ଦାନ । ଭୀମଭୋଇ ଓ ରାଜେନ୍ଦ୍ର ଏ କାବ୍ୟ ପରାମ୍ପରାର ଦୁଇଟି ଶଙ୍ଖ, ଦୁଇଟି ମହାଦାନ । ପ୍ରାୟ ଶହେ ବର୍ଷର ରଚିତ ଓଡ଼ିଆ କବିତାର ଇତିହାସରେ ଦୁଇଟି ଉଜ୍ଜ୍ୱଳତମ ଜ୍ୟୋତିଷ୍କ ଉଭୟେ ଜୀବନ ଓ ଜଗତପ୍ରତି ଅଧିକ ସ୍ପର୍ଶକାତର ପୁଣି ଜିଜିବିଷାରେ ପ୍ରମତ୍ତ ।

ଏମିତି ଏକ ଜୀବନାନୁଭୂତି ଗଢ଼ିତୋଳିବାରେ କ'ଣ ପଶ୍ଚିମ ଓଡ଼ିଶାର ଭୌଗୋଳିକ ସ୍ଥିତି ଦାୟୀ ? ଯେଉଁଠି ଅନୁଦାର ପ୍ରକୃତି ବିରୁଦ୍ଧରେ ପ୍ରତିନିୟତ ଜୀବନ ସଂଗ୍ରାମରେ ମଣିଷ ଲହୁଲୁହାଣ । ଯେଉଁଠି ମଣିଷ ସହ ସହଭାଗୀ ଜୀବନଟିଏ ବଞ୍ଚିବାପାଇଁ ମଣିଷ ଜନ୍ମତଃ ଅଭ୍ୟସ୍ତ । ଉପନିବେଶବାଦୀ ଶାସନବ୍ୟବସ୍ଥା ଯେଉଁ ଅଞ୍ଚଳର ସହଜାତ ଭାଗ୍ୟ । ଏ ସବୁକୁ ସ୍ୱୀକାରି ନେବା ପାଇଁ, କେତେବେଳେ ତା

ବିରୁଦ୍ଧରେ କୋମଳ ବିଦ୍ରୋହ ପାଇଁ ଆଉ କେତେବେଳେ ଜୀବନର ରୁକ୍ଷ ବାସ୍ତବତାରୁ ପଳାୟନ ପାଇଁ ଆହ୍ୱାନ ହିଁ ଏ ଅଞ୍ଚଳର କବିମାନଙ୍କ ନିଜସ୍ୱ କଣ୍ଠସ୍ୱର । ଇଳାବୃତ୍ତର କବି ବିନୋଦ ଚନ୍ଦ୍ର ନାୟକଙ୍କୁ ଦେଖନ୍ତୁ ।

ଯେତେବେଳେ ସେ କହନ୍ତି-

"ଲୋତକ ଲୋହିତ ପଥ ପିଚ୍ଛଳ ଧରଣୀ ଏ
ବିଷ ନିଶ୍ୱାସେ କି ଅପରିମିତ ବ୍ୟଥା ଦିଏ
ଆହୁରି ଅଛିରେ ଆନ ନୀଳାକାଶ ଶ୍ୟାମଭୂମି
ଆନସୃଷ୍ଟି ସେ ଦେବତାର
ଦିନ ସରେ ତହିଁ ଅଳସ ବିଳାସେ ରାତି ଆସେ
ଶୟନ ସୋହାଗେ ବିନିତାର
ତହିଁକି ଝରଣା ଧାରା ଶିଉଳିର ସମାକୂଳ
ସନ୍ତରି ଧାଏଁ ନିୟୁତ କଳିକା ବନଫୁଲ ।"

'ଗ୍ରାମ୍ୟପଥ'ର କବି ଗାଁ ଛାଡ଼ି, ମାଟି ଛାଡ଼ି ପଳାୟନ କରନ୍ତି କେଉଁ ଦୂର ଇଳାବୃତ୍ତକୁ ନୂଆଁ ମାଟିଖୋଜି, ନୂଆ ଜୀବନ ଖୋଜି । ଜୀବନ ପ୍ରତି ଅସରନ୍ତି କରୁଣା ଓ ଆସକ୍ତି ହିଁ ବିନୋଦଚନ୍ଦ୍ର ନାୟକଙ୍କ ପଳାୟନ ପାଇଁ ପ୍ରେରଣିତ କରିଛି । କିନ୍ତୁ ରାଜେନ୍ଦ୍ର କିଶୋର ପଣ୍ଡା ଜୀବନ ସହ ସାଲିସ୍ କରନ୍ତି ଅଦ୍‌ଭୁତ ବେସାଲିସ୍ କଣ୍ଠରେ ।

"ଗ୍ଲାନିରେ ଅନୁଶୋଚନାରେ ବିରହରେ ଅପ୍ରାପ୍ତିରେ
ଦୁଃଖ ଯନ୍ତ୍ରଣାର ଅନ୍ଧକୂପରେ
ନିଆଁ ଭରା ଫୁସ୍ ଫୁସ୍‌ର ଧଇଁପେଲା ଶ୍ୱାସରେ ବା
ସାରାରାତି ପୁହାଇ ଦିଏଁ ଅନାଏ ପାହାନ୍ତର ପୃଥିବୀକୁ
ଅନାଏ ତୋର ପୃଥିବୀକୁ, ଜକେଇ ଆସେ ଲୁହ...
ଫୁଟିଉଠେ ଅପୂର୍ବ ସ୍ମିତ ମୋର ଅଧରରେ
କହେଁ:
ମୁଁ ଅଙ୍ଗୀକାର କରୁଛି, ଜୀବନ, ମୁଁ ତତେ ଭଲପାଏ !

ଓଡ଼ିଆ କାବ୍ୟଜଗତକୁ ପଶ୍ଚିମ ଓଡ଼ିଶାର ଦାନ କଥା କହିଲାବେଳେ ଏଣୁ ଆଜି ମନେପଡ଼େ ଭୀମଭୋଇଙ୍କର ଜଗତର ଦୁଃଖ ଦୂର ପାଇଁ କ୍ରୋଧ ଓ କ୍ରନ୍ଦନମିଶା ଅଭିମାନୋକ୍ତି । ଗଙ୍ଗାଧରଙ୍କ ସବୁକିଛିକୁ ସ୍ୱୀକାରିନେଇ ଭଗବାନଙ୍କ ପ୍ରତି ପୂର୍ଣ୍ଣ ଆତ୍ମସମର୍ପଣ, ବିନୋଦଚନ୍ଦ୍ର ନାୟକଙ୍କ ନୂଆଁମାଟିର ଅନ୍ୱେଷଣ ଓ ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଜୀବନ ଜିଜିବିଷା । ଜୀବନ ପ୍ରତି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଦୃଷ୍ଟିଭଙ୍ଗୀ ସ୍ୱତଃ ବାରି ହୋଇପଡ଼େ ଏଇ କାବ୍ୟ ପରମ୍ପରାରୁ ।

ତେବେ ଆଉ କେତୋଟି କଥା ନ କହିଲେ ଏ ଆଲୋଚନ ନିହାତି ଅସମ୍ପୂର୍ଣ୍ଣ ମନେହେବ । ପ୍ରଥମ କଥା ହେଲା ଗଙ୍ଗାଧରଙ୍କ କାଳରେ ଏ ଅଞ୍ଚଳରେ ଘଟିଥିବା ଏକ ସାଂସ୍କୃତିକ ଆନ୍ଦୋଳନ ଯାହାର ମୂଳଭିତ୍ତି ଥିଲା ଓଡ଼ିଆ ଭାଷା ଓ ସାହିତ୍ୟ ମାଧ୍ୟମରେ ଉତ୍କଳୀୟ ଜାତୀୟତାର ପ୍ରଚାର । ସମଗ୍ର ପଶ୍ଚିମ ଓଡ଼ିଶାରେ ଏ କାଳରେ ହିଁ ଘଟିଛି ଉତ୍କଳୀକରଣ । ଯାହାର ଶେଷ ଫଳଶ୍ରୁତି ରୂପେ ବୃହତ୍ତର ଓଡ଼ିଶା ପ୍ରଦେଶଟି ଗଠିତ ହୋଇଛି ୧୯୪୮ ମସିହା ଜାନୁୟାରୀ ୧ ତାରିଖରେ । ଗଙ୍ଗାଧରଙ୍କ କାଳରୁ ଆଜିଯାଏଁ ପ୍ରାୟ ଶହେ ବର୍ଷ ହେଲା ଓଡ଼ିଶା କାବ୍ୟ କବିତା ପରମ୍ପରାର ପ୍ରଭାବ ଓ ପ୍ରତିସ୍ପର୍ଦ୍ଧାରେ ପଶ୍ଚିମ ଓଡ଼ିଶାର କବିମାନେ ରଚନାଶୀଳ । କବି ଖଗେଶ୍ୱର ସେଠ୍, ବ୍ରଜରାଜ ସିଂଦେଓ, ବଳଭଦ୍ର ବହିଦାର, କୃଷ୍ଣ କର ଓ ବ୍ରଜମୋହନ ପଣ୍ଡାଙ୍କ ଠୁ ଆରମ୍ଭ କରି ଆଜିର ତରୁଣତମ କବିଙ୍କ ଯାଏଁ, ନିଜସ୍ୱ କଣ୍ଠସ୍ୱରଟିଏ ପ୍ରତିଷ୍ଠିତ କରିବାର ସମସ୍ତ ସାମର୍ଥ୍ୟ ସତ୍ତ୍ୱେ ପ୍ରଭାବ ଓ ପ୍ରତିସ୍ପର୍ଦ୍ଧାରେ ପ୍ରତିଭାର ସମସ୍ତ ଶକ୍ତି କ୍ଷୟ ଘଟିଛି ଓ ଘଟିଚାଲିଛି ।

ପଶ୍ଚିମ ଓଡ଼ିଶା ଏକ ଭୌଗୋଳିକ ଅବସ୍ଥିତି । ପ୍ରତିଟି ସ୍ୱତନ୍ତ୍ର ଭୌଗୋଳିକ ସ୍ଥିତି, ନିଜସ୍ୱ ଐତିହ୍ୟ ଓ ଇତିହାସ, ସଂସ୍କୃତି ଓ ସାହିତ୍ୟ ସୃଷ୍ଟି କରେ । ତାହା ହିଁ ମଣିଷକୁ ମାଟିସହ ଯୋଡ଼େ । ସେଇ ସମ୍ପର୍କ ହିଁ ସାରସ୍ୱତ ଉପାଦାନ ସୃଷ୍ଟି କରେ । ଆଜି ପଶ୍ଚିମ ଓଡ଼ିଶାର ଦୁଃଖ ଓ ଦାରିଦ୍ର୍ୟ, ଅର୍ଥନୈତିକ ଶୋଷଣ ଓ ଆଞ୍ଚଳିକ ବୈଷମ୍ୟ ସାରା ବିଶ୍ୱରେ ଚର୍ଚ୍ଚାର ବିଷୟ । ଅଥଚ ଏ ଅଞ୍ଚଳର କାବ୍ୟ ପରମ୍ପରାରେ ତା'ର

ରୂପାନ୍ତରଣ ଘଟିଛି ଖୁବ୍ କମ୍ । ସାମାଜିକ ଜୀବନ ପ୍ରତି ଏଇ ବିତଶ୍ରଦ୍ଧ ଭାବ କବିମାନଙ୍କୁ ଅଧିକ ଜୀବନ ପ୍ରତି ଦାର୍ଶନିକ ଦୃଷ୍ଟିଭଙ୍ଗୀ ଆଣିଦେଇଛି । ଏଣୁ ଏବେ ରଚିତ ତରୁଣ କବିଙ୍କ କବିତାମାନଙ୍କରେ ଜୀବନଠାରୁ ଅଧିକ ପ୍ରାଧାନ୍ୟ ପାଉଛି ଦର୍ଶନ ।

ଦ୍ୱିତୀୟ କଥା ହେଲା ବ୍ୟକ୍ତିର ମାନସିକ ସତ୍ତା ମୁଖ୍ୟତଃ ଅଭିବ୍ୟକ୍ତି ପାଏ ଭାଷାରେ । ସାମାଜିକ ଜୀବନରେ ବ୍ୟବହୃତ ଭାଷା ଓ ସାରସ୍ୱତ ଜୀବନରେ ବ୍ୟବହୃତ ଭାଷା ଯେତେବେଳେ ଦୂରରୁ ଦୂରତର ହୋଇଯାଏ, ଦ୍ୱିଧାଗ୍ରସ୍ତ କବି ଦୁଇଟି ପୃଥିବୀରେ ବଞ୍ଚେ । ପଶ୍ଚିମ ଓଡ଼ିଶାର କବିମାନଙ୍କ ପାଇଁ ଏହା ବୋଧହୁଏ ଆଉ ଏକ ସମସ୍ୟା । ଅଭିଧାନରୁ ଶବ୍ଦଖୋଜି ଆଜି କବିତା ନ ଲେଖିଲେ ବି ମାନସପଟରୁ ମାନକ ଶବ୍ଦ ଖୋଜିବାରେ ଏ ଅଞ୍ଚଳର କବିମାନେ ଅଧିକ ବ୍ୟସ୍ତ । ଏ ଅଞ୍ଚଳର କବିତା ଏଣୁ କମ୍ ସଂସ୍କୃତିନିଷ୍ଠ ବୋଲି ଅଧିକ ସଂସ୍କୃତନିଷ୍ଠ ।

ଶେଷରେ ଆଉ ଏକ କଥା । ଚର୍ଯ୍ୟାଗୀତିକାରୁ ଆଜିଯାଏଁ ଦୀର୍ଘ ହଜାରେ ବର୍ଷର ଇତିହାସରେ ପଶ୍ଚିମ ଓଡ଼ିଶାର କବି ସୃଷ୍ଟିକରିଛି ଅନେକ ସ୍ୱତଃସ୍ଫୂର୍ତ୍ତ ମନ୍ମୟ କବିତା । ଏ ଅଞ୍ଚଳର କବି ଯେମିତି କାହାଣୀ ସୃଷ୍ଟି କରି ଜାଣେନା । କାହାଣୀର କୁଟିଳ ଗଠନକୁ ଭଲପାଏନା ବୋଧହୁଏ । ଆମ ଲୋକ ସାହିତ୍ୟର ଲିରିକ୍ ପରମ୍ପରା ଏଥିପାଇଁ ହୁଏତ ଦାୟୀ । ଆମ ଜୀବନରେ ଇତିହାସ ନୁହେଁ, ବର୍ତ୍ତମାନ ପ୍ରତି ଅଧିକ ଆସକ୍ତି ଏହାର କାରଣ । ଚୈତନ୍ୟ ଦାସ କହନ୍ତୁ ବା ଚନ୍ଦ୍ରମଣି ଦାସ କହନ୍ତୁ, ଭୀମଭୋଇ ହୁଅନ୍ତୁ ବା ରାଜେନ୍ଦ୍ର ପଣ୍ଡା ହୁଅନ୍ତୁ ଏ ଅଞ୍ଚଳର କବିମାନେ ଜୀବନର 'ପରିଚୟ ଖୋଜୁଥିବା କବିଟିଏ ମାତ୍ର । ଈଷତ୍ ବେସାଲିସ, ଅଳ୍ପ ଉଗ୍ର ଓ ଅନ୍‌ମନୀୟ । ନିଜର ମାଟିର କାହାଣୀ କହି ନ ପାରିବା ଦୁଃଖରେ ବୋଧହୁଏ ଏମାନେ ସାରା ପୃଥିବୀର, ସମଗ୍ର ମଣିଷ ଜାତିର କଥା କହନ୍ତି । କବିତାର ସନ୍ଧିଧାନ ଗଢ଼ନ୍ତି, କବିପଣରେ ହିଁ ବଞ୍ଚନ୍ତି । କୋଉ ରାଜାର ପ୍ରଜାପାଟକ ନ ହୋଇ ନିଜେ କବିତାର ସାମାଜ୍ୟରେ ସମ୍ରାଟ୍ ମନେ ହୁଅନ୍ତି । ଏହା ବୋଧହୁଏ ଏ ଅଞ୍ଚଳର ଆଉ ଏକ ଅସ୍ମିତା, ଯେମିତି

ରାଜେନ୍ଦ୍ର କିଶୋର ପଣ୍ଡା କହନ୍ତି:

ଦେଶ କଥା ପରୁରନା
ଦେଶ ବୋଲି କିଛି ନାହିଁ
କେବଳ କେତେକ ବୁଢ଼ା ପୃଥିବୀର ମାନଚିତ୍ର ପରେ
ରଙ୍ଗରେଖା ବିଭାଜନ କରିଥାନ୍ତି
....ଅସ୍ୱୀକାର କରେ ତାହା
ଏଇତ ମୁଁ ଅସ୍ୱୀକାର କରୁଛି ଭାରତବର୍ଷକୁ
ଅସ୍ୱୀକାର କରୁଅଛି
ରାଜନୀତି-ପ୍ରବର୍ତ୍ତିତ ଦେଶାତ୍ମବୋଧକୁ
ନିଆରା ପତାକା ମୋର ଉଡ଼େ ଫରଫର
କବିତା ଇ ସମ୍ବିଧାନ ମୋର ।

*(ସଂବାଦ, ପଣ୍ଡିମା, ୨୦୦୧)*

# ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତି: ସାଂସ୍କୃତିକ ସଂଘର୍ଷ ଓ ସହାବସ୍ଥାନ

ଭାଷାକୁ ଭିତ୍ତିକରି ଜାତି ଗଢ଼ିବା ଖୁବ୍ କମ ଦିନର କଥା । ଜାତିର ସଂଗଠକ ଶକ୍ତି ସଂସ୍କୃତି । ସଂସ୍କୃତି ମଣିଷ ମଣିଷ ଭିତରେ ଗୋଟିଏ ସମାନ ଚିନ୍ତନ ସୃଷ୍ଟିକରେ, ଗୋଷ୍ଠୀଏ ମଣିଷକୁ ଗୋଟିଏ ଆଭିମୁଖ୍ୟରେ ଆଗେଇ ନିଏ । ଓଡ଼ିଆ ଜାତିର ଜନ୍ମ ଏପରି ଏକ ସାଂସ୍କୃତିକ ପ୍ରେରଣାରୁ ନୁହେଁ, ଏକ ଭାଷିକ ପ୍ରେରଣାରୁ । ଆଜିର ଓଡ଼ିଆ ଜାତି ନିକଟରେ ଏଣୁ ଏକ ସମାନ ସାଂସ୍କୃତିକ ପରମ୍ପରା ଆଶା କରାଯାଇ ନପାରେ । ସାଂସ୍କୃତିକ ବୈଚିତ୍ର୍ୟ ହିଁ ଏହାର ବୈଶିଷ୍ଟ୍ୟ । ଆଜିର ରାଜନୈତିକ ଓଡ଼ିଶାରେ ରହିଛି ସାଂସ୍କୃତିକ ବୈଚିତ୍ର୍ୟ ଓ ବିକାଶଶୀଳ ଏକ ନୂତନ ସଂସ୍କୃତି । ଘରାଣୀ, ଚଳଣୀ ଓ ଚମକରେ ଏହାର ପ୍ରତ୍ୟେକ ଭୌଗୋଳିକ ଅଞ୍ଚଳ ଅନ୍ୟଠାରୁ ଭିନ୍ନ । ସେଗୁଡ଼ିକରେ ଘଟୁଥିବା ସାଂସ୍କୃତିକ ସଂଘର୍ଷ, ସହାବସ୍ଥାନ ଓ ସଂକ୍ରମଣ ଗଭୀର ନିରୀକ୍ଷାର ଅପେକ୍ଷା ରଖେ । ଏହା ଓଡ଼ିଶାର ବୃହତ୍ତମ ସାଂସ୍କୃତିକ ଐକ୍ୟର ପ୍ରତିବନ୍ଧକ ନୁହେଁ, ତାର ବିଭିନ୍ନ ଅଙ୍ଗର ଉପାଙ୍ଗ ଅନ୍ୱେଷଣ, ବିଭିନ୍ନ ଅଙ୍ଗରେ ଘଟୁଥିବା ବିବର୍ତ୍ତନର କାରଣ ସନ୍ଧାନ ।

ଉପସ୍ଥାପିତ ପ୍ରବନ୍ଧରେ ପଶ୍ଚିମ ଓଡ଼ିଶାକୁ ଆଲୋଚନାର କ୍ଷେତ୍ରଭାବରେ ଗ୍ରହଣ କରାଯାଇଛି ।ଏହା ଆଦିବାସୀ ସଂସ୍କୃତି ସହ ଆର୍ଯ୍ୟ ସଂସ୍କୃତିର ସଂଘର୍ଷ ଓ ତାର ସହାବସ୍ଥାନର ଆଲୋଚନା । କୌଣସି ନିର୍ଦ୍ଦିଷ୍ଟ ଐତିହାସିକ ସମୟରେ ଏହା ସୀମାବଦ୍ଧ ନୁହେଁ, କିନ୍ତୁ ସମୟର ବିଭିନ୍ନ ସ୍ତରରେ ଏହାର ବିବର୍ତ୍ତନ କରାଯାଇ ପାରୁନାହିଁ ।

ଏହି ପାଠଚକ୍ରରେ ଆଲୋଚନା ସୁବିଧା ପାଇଁ ରାଜନୈତିକ ଓଡ଼ିଶା ମାନଚିତ୍ରର ଜିଲ୍ଲାମାନଙ୍କୁ କେନ୍ଦ୍ରକରି ଆଲୋଚନାର ଏକକ ସ୍ଥିର କରାଯାଇଛି । କିନ୍ତୁ

ଏହି ପ୍ରବନ୍ଧରେ ରାଜନୈତିକ / ଭୌଗୋଳିକ ଓଡ଼ିଶାଠାରୁ ସାଂସ୍କୃତିକ ଓଡ଼ିଶାର ସ୍ୱରୂପ ଉଦ୍‌ଘାଟନ ପାଇଁ ଚେଷ୍ଟା କରାଯାଇଛି ।

ପଶ୍ଚିମ ଓଡ଼ିଶାରେ ଆର୍ଯ୍ୟବସତିର ଦୁଇଟି **ସ୍ପଷ୍ଟ** ସମ୍ଭାବନା ରହିଛି । ପ୍ରଥମଟି ହେଲା ମହାନଦୀ କୂଳେ କେନ୍ଦ୍ରାତୀଗ ଦକ୍ଷିଣ-ପୂର୍ବ ଆର୍ଯ୍ୟଗତି । ଅନ୍ୟଟି ମଧ୍ୟଦେଶରୁ ପୂର୍ବ ଉପକୂଳକୁ ଆର୍ଯ୍ୟ ଆଗମନ ଓ ପୂର୍ବ ଉପକୂଳରୁ ପଶ୍ଚିମକୁ ବସତି ସଂକ୍ରମଣ । ଉଭୟ ଯୁକ୍ତି ସମ୍ଭାବନାମୟ । ହୋଇପାରେ ଉଭୟଟି ସତ୍ୟଭିତ୍ତିକ । ଏହି ଆର୍ଯ୍ୟବସତି ସ୍ଥାପନର ଐତିହାସିକ ସମୟ ନିରୁପଣ କଷ୍ଟସାଧ୍ୟ । ତଥାପି ସୋମବଂଶୀ ରାଜାମାନଙ୍କ କାଳରୁ (୭ମ/୮ମ ଶତାବ୍ଦୀ) ପୂର୍ବ ଉପକୂଳ ସହ ସମ୍ପର୍କ ଓ ସଂଘର୍ଷର ପ୍ରମାଣ ମିଳେ । ଏଇ ଶତାବ୍ଦୀରେ ପୂର୍ବ ଉପକୂଳରୁ କିଛି ବ୍ରାହ୍ମଣ ଓ ବ୍ରାହ୍ମଣେତର ଆର୍ଯ୍ୟ ରାଜବଂଶ ସହ ଆସିଥିବା ଖୁବ୍ ସମ୍ଭବ । ପୁଣି ମିଳୁଥିବା କେତୋଟି ତାମ୍ରଶାସନରୁ ପ୍ରମାଣ ମିଳେ ସମ୍ବଲପୁର ଓ ପାଟଣା ଅଞ୍ଚଳରେ ତା ପୂର୍ବରୁ ଆର୍ଯ୍ୟମାନେ ସ୍ଥାୟୀ ଭାବରେ ବସବାସ କରୁଥିଲେ । (ସମ୍ବଲପୁର ଇତିହାସ - ଶିବନାରାୟଣ ଦାସ) । ପଶ୍ଚିମ ଓଡ଼ିଶାର ଆର୍ଯ୍ୟଜାତିରେ (ବ୍ରାହ୍ମଣ, ଭଣ୍ଡାରୀ, ଗଉଡ଼, ତେଲୀ ଇତ୍ୟାଦିରେ) ଦୁଇଟି ଗୋଷ୍ଠୀ ଦେଖାଯାଏ, ଝାଡୁଆ ଗୋଷ୍ଠୀ ଓ ଓଡ଼ିଆ ଗୋଷ୍ଠୀ । ଝାଡୁଆ ଗୋଷ୍ଠୀ ଆଋର ଓ ଅଭିଋରରେ ଅଧିକ ଅଷ୍ଟ୍ରିକ । ଓଡ଼ିଆ ଗୋଷ୍ଠୀ ସାଧାରଣତଃ କମ ସତ୍ତା ହଜାଇଥିବା ଆର୍ଯ୍ୟ । ମନେହୁଏ ଝାଡୁଆ ଗୋଷ୍ଠୀ ଝାଡ଼ଖଣ୍ଡ ମଧ୍ୟଦେଇ ମହାନଦୀର କୂଳେ କୂଳେ ଆସିଥିବା ଆର୍ଯ୍ୟ ଗୋଷ୍ଠୀ ଓ ଓଡ଼ିଆମାନେ ପୂର୍ବ ଉପକୂଳରୁ ପରବର୍ତ୍ତୀ କାଳରେ ଆସିଥିବା ଆର୍ଯ୍ୟଗୋଷ୍ଠୀ ।

ପ୍ରଥମ ଆର୍ଯ୍ୟଗୋଷ୍ଠୀ ପହଞ୍ଚିବାବେଳେ ପାହାଡ଼ି ମଣିଷଙ୍କର ଥିଲା ଏ ମାଟିରେ ବିସ୍ତୀର୍ଣ୍ଣ ଦଖଲ । କିନ୍ତୁ ନବାଗତମାନେ ଥିଲେ ଚତୁର ଓ ମାଟିଲୋଭୀ । ସେତେବେଳେ କୃଷି ସଂସ୍କୃତି ଉତ୍ତର ଭାରତରେ ବ୍ୟାପି ଯାଇଥିଲା । ମାଟିର ଲୋଭରେ ଆର୍ଯ୍ୟମାନେ ଦେଶ ବିଦେଶକୁ ସଞ୍ଚରି ଯାଉଥିଲେ । ମାଟି ସମ୍ପର୍କରେ ପାହାଡ଼ି ମଣିଷଙ୍କର ଥିବା ସମସ୍ତ  ସଂସ୍କାରକୁ ଆପଣାର କରିବା ଛଡ଼ା ସେମାନଙ୍କର ଗତ୍ୟନ୍ତର ନଥିଲା । ଚିନ୍ତାର ମହାନତା, ଧାର୍ମିକ ସଂବୃଦ୍ଧି ଓ ଜୀବନଯାପନର ଉଚ୍ଚତର ମାନଦଣ୍ଡ ସତ୍ତ୍ୱେ

ଆର୍ଯ୍ୟମାନେ ଆଦିବାସୀ ଗୋଷ୍ଠୀଦ୍ୱାରା ପ୍ରଭାବିତ ହେଲେ । ଏହି ପ୍ରଭାବକୁ ପାଶ୍ଚାତ୍ୟ ପ୍ରଭାବ ସହ ତୁଳନା କରାଯାଇ ନ ପାରେ । ଏହା ତାର ସଂପୂର୍ଣ୍ଣ ବିପରୀତ । ଆର୍ଯ୍ୟମାନଙ୍କୁ ନିଜର କରିବା ପାଇଁ ଆଦିବାସୀମାନେ ମୋଟେ ପ୍ରସ୍ତୁତ ନଥିଲେ । ଏବେବି ଗଣ୍ଡ ଜାତିର ଲୋକେ ବ୍ରାହ୍ମଣଙ୍କର ବର୍ଣ୍ଣ ଶ୍ରେଷ୍ଠତ୍ୱକୁ ଅସ୍ୱୀକାର କରନ୍ତି । (ଗଣ୍ଡମାନେ ପଇତା ଧାରଣ କରନ୍ତି, ବ୍ରାହ୍ମଣଙ୍କ ହାତରେ ଖାଆନ୍ତି ନାହିଁ ଇତ୍ୟାଦି) କିନ୍ତୁ ଅନ୍ତତଃ ଅଷ୍ଟମ ଶତାବ୍ଦୀରୁ ପଶ୍ଚିମ ଓଡ଼ିଶାରେ ରାଜାମାନଙ୍କ ଦ୍ୱାରା ପୃଷ୍ଠପୋଷକତା ପାଇ ଆସିଛନ୍ତି। (ସମ୍ବଲପୁର ଇତିହାସ) ପରିଣାମରେ, ଉଭୟ ଗୋଷ୍ଠୀ ମଧ୍ୟରେ ବାହ୍ୟତଃ ସହାବସ୍ଥାନର ସର୍ତ୍ତସବୁ ସହଜ ହେଲେବି ପ୍ରଚ୍ଛନ୍ନଭାବରେ ନିଜକୁ ଜାହିର କରିବାର ଇଚ୍ଛା ଉଭୟଙ୍କ ପାଖରେ ରହିଛି । ପଶ୍ଚିମ ଓଡ଼ିଶାର ଲୋକବିଦ୍ୟାରେ ଏହି ସଂଘର୍ଷ ଓ ସହାବସ୍ଥାନର ଚିତ୍ର ପ୍ରଚୁର । ପଶ୍ଚିମ ଓଡ଼ିଶାର ଲୋକ-ସଂସ୍କୃତିର ଏହାହିଁ ହେଉଛି ଜୀବନ-ନାଟିକା । ଲୋକକାହାଣୀ, ଲୋକସଂଗୀତ, ଲୋକକଳା କିମ୍ବା ଲୋକଚରିତ୍ର ଗୋଟିଏ ଶବ୍ଦରେ ଲୋକବିଦ୍ୟା ଏହି ସଂଘର୍ଷ ଓ ସମନ୍ୱୟ ଏବଂ ତତ୍‌ସୃଷ୍ଟ ଏକ ନୂତନ ସଂସ୍କୃତିର ଫଳ ।

॥ ଦୁଇ ॥

ଆଦିବାସୀ ଲୋକଗୀତ ବେଶୀ ଜୀବନପ୍ରବଣ । ଆର୍ଯ୍ୟମାନଙ୍କ ଲୋକଗୀତ ବେଶୀ ଇତିହାସ ପ୍ରବଣ । ଆଦିବାସୀଟିଏ ବର୍ତ୍ତମାନରେ ବଞ୍ଚେ । ଅତୀତର ସ୍ମୃତି ଝାପ୍‌ସା ଝାପ୍‌ସା ମନରେ ଥାଏ । ତାକୁ ନେଇ ବିହ୍ୱଳ ବା ବିଭୋର ହେବା ଆଦିବାସୀ ପାଇଁ ସୁହାଏନା । ଏଣୁ ଆଦିବାସୀ ଲୋକଗୀତରେ ଗାଥା ନାହିଁ । ବର୍ତ୍ତମାନର ଘଟଣା ଆଦିବାସୀ ଲୋକଗୀତର ମୂଳକଥାବସ୍ତୁ । ନିର୍ଦ୍ଦିଷ୍ଟ ସ୍ଥାନ, କାଳ ଓ ପାତ୍ରରେ ସଂଘଟିତ ଘଟଣା ଆଦିବାସୀ ଲୋକଗୀତରେ ବିରଳ ।

ପଶ୍ଚିମ ଓଡ଼ିଶାର ଲୋକଗୀତର ସ୍ୱକୀୟତା ଏହି ଲିରିକ୍ ଧର୍ମୀ । ଛନ୍ଦ ଭିତ୍ତିରେ ଏହାର ନାମକରଣ - ରସରକେଲି, ମାଏଲାଜଡ଼, ଝୁମେର ଇତ୍ୟାଦି, କିମ୍ବା ଅଭିରଚିକ କ୍ରିୟା କିମ୍ବା କର୍ମ ଭିତ୍ତିରେ - କରମା, ଦେବଗୁନିଆଁ, ବିନାକାଲିଆ ଗୀତ, ଦଣ୍ଡ ଗୀତ, ବାଙ୍ଗରୀ ଗୀତ ଇତ୍ୟାଦି ।

ଗୋଟିଏ କଥା କହି ପଶ୍ଚିମ ଓଡ଼ିଶାର ଲୋକଗୀତ ସମ୍ପର୍କରେ କହିବା ଶେଷ କରାଯାଇ ପାରେ : ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳଠାରୁ ପଶ୍ଚିମ ଓଡ଼ିଶାର ଯାହା

ବିଶେଷତା ସେଠାରେ ଲକ୍ଷ୍ୟ କରାଯାଇପାରେ ଆଦିବାସୀ ସଂସ୍କୃତିର ପ୍ରଭାବ । ଏବେ ମୁଁ ଗୋଟିଏ କାହାଣୀ ସମ୍ପର୍କରେ ଟିକିଏ ବିସ୍ତୃତଭାବେ କହୁଛି ।

॥ ତିନି ॥

ଆଭିଚାରିକତା ସହ ସମ୍ପର୍କିତ କାହାଣୀ ଉଭୟ ଆର୍ଯ୍ୟ ଓ ଅନାର୍ଯ୍ୟ ଗୋଷ୍ଠୀରେ ପରିଲକ୍ଷିତ । ଏହା ଏକାଧାରରେ ମହିମା ପ୍ରଖ୍ୟାପକ କାହାଣୀ ଓ ଲୋକକାହାଣୀ । ପଶ୍ଚିମ ଓଡ଼ିଶାର ଲୋକକାହାଣୀ ଓ ଧର୍ମରେ କିପରି ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ସମନ୍ୱୟ ଘଟିଛି କରମା ପରବ ଓ କରମା କାହାଣୀକୁ ଆଲୋଚନା କଲେ ସ୍ପଷ୍ଟ ହୁଏ ।

କରମା ଏକ ଆଦିବାସୀ ଉତ୍ସବ । ମଦ ଓ ମାନ୍ଦଲ, ଧାଂଗା ଓ ଧାଂଗୀରେ (ଯୁବକ ଓ ଯୁବତୀ) ଏହା ପାଳିତ ହୁଏ । ଏହାର ସମସ୍ତ ଅଭିଚାରିକ କ୍ରିୟାରେ ଆଦିବାସୀ ସଂସ୍କୃତିର ସଙ୍କେତ ନିହିତ । କିନ୍ତୁ ଆଜିକାଲିର ପ୍ରଚଳିତ କରମାକୁ ପୁରାମାତ୍ରାରେ ଆଦିବାସୀ ଉତ୍ସବ କୁହାଯାଇ ପାରିବ ନାହିଁ । ଆର୍ଯ୍ୟାୟନରେ ଏହା ନୂତନ ରୂପ ପାଇଛି । ଏହାର ପୂଜା, କାହାଣୀ ଓ ସଙ୍ଗୀତରେ ଆର୍ଯ୍ୟ ସଂସ୍କୃତିର କିଛି ପ୍ରଭାବ ରହି ଯାଇଛି ।

ସମସ୍ତ ପ୍ରାଚୀନ ଧର୍ମ ଉପାସନା ପରି କରମା ଏକ ସକାମ ଉପାସନା । କୃଷିର ଉନ୍ନତି ସହ ଏହା ବିଶେଷଭାବରେ ଜଡ଼ିତ । ମାଟି ଓ ମଣିଷର ସୌଭାଗ୍ୟ ଓ ସଂବୃଦ୍ଧି ପାଇଁ କରମସାନୀ ବା କରମସାଇଁ ପାଖରେ ମଣିଷ ପ୍ରାର୍ଥନାରତ । ଭାଦ୍ରବ ଶୁକ୍ଳ ଏକାଦଶୀର ଏହାର ଆରମ୍ଭ । ପ୍ରୟୋଜନ ଅନୁସାରେ ଶରତ ଋତୁର ଅନ୍ୟକେବେ ମଧ୍ୟ ପୂଜାର ଆୟୋଜନ କରାଯାଇ ପାରେ । ଶାରଦୀୟ ଜହ୍ନର ତଳେ କରମସାନୀର ଏହି ପୂଜାପାଇଁ ଆଜିବି ଆରଣ୍ୟକ ମଣ୍ଡପଟିଏ ଅପେକ୍ଷା ରଖେ । ପୂଜାର କୌଣସି ମନ୍ତ୍ର ନାହିଁ, ପୂଜା କେବଳ ମଦ ଓ କୁକୁଡ଼ାର ନିବେଦନ । ନିବେଦନ ପରେ କରମସାନୀର ମହିମା ପ୍ରଖ୍ୟାପକ କାହାଣୀଟିଏ ଝାଙ୍କର ଶୁଣେଇ ଦିଏ । ପୁରା ରାତିଟା ମଦ ଓ ମାଦଳରେ, ଧାଂଗା ଧାଂଗୀରେ ଜମିଯାଏ । ସକାଳେ କରମାସାନୀ ଗାଁ ପରିକ୍ରମା କରେ । ସବୁ ଦ୍ୱାରରେ ତାର ପୂଜା ପରେ ନଈ ପାଣିରେ ଭସାଯାଏ ।

କରମା କରମ ଗଛର ପୂଜା । ପୂଜା ପଦ୍ଧତିରେ ଆର୍ଯ୍ୟ କୌଣସି ହସ୍ତକ୍ଷେପ କରିନାହିଁ । ଆଜିବି ଆର୍ଯ୍ୟପାଇଁ କରମସାନୀ ଦାଣ୍ଡର ଦିଅଁ ହୋଇ ରହିଯାଇଛି । କରମସାନୀ ପ୍ରତି ଆର୍ଯ୍ୟର ବିଶ୍ୱସ୍ତତା ରହିଛି । ସେ ଝାଙ୍କର ସାହାଯ୍ୟରେ ତାର ପୂଜା କରେଇ ନିଏ । ଏଠାରେ ଭୟ ବା ଭକ୍ତି ଠାରୁ ମୈତ୍ରୀର ଇଚ୍ଛା ବେଶୀ । କରମାର ଉତ୍ସବରେ ଆର୍ଯ୍ୟ ଶ୍ରଦ୍ଧାଶୀଳ ଦୂରତାରେ ରହିଥାଏ ।

ପ୍ରତ୍ୟେକ ମହିମା ପ୍ରଖ୍ୟାପକ କାହାଣୀର ସଂରଚନା । (ଯେମିତି ବ୍ରତକଥା, ଓଷା, ମହାତ୍ମ୍ୟ) ଚାରୋଟି ପର୍ଯ୍ୟାୟରେ ଗଠିତ । ୧) ଆକସ୍ମିକଭାବେ କୌଣସି ଏକ ଦେବତାକୁ ସ୍ୱୀକାର ଓ ତାର ଉପାସନା, ୨) ସେ ଦେବତାର ଦୟାରୁ ସୌଭାଗ୍ୟପ୍ରାପ୍ତି ଓ ଦେବତା ପ୍ରତି ଅବମାନନା, ୩) ଆକସ୍ମିକଭାବେ ବିପର୍ଯ୍ୟୟର ଆରମ୍ଭ ଓ ଦୈବୀଶକ୍ତି ନିକଟରେ ମଣିଷର କରୁଣ ପରିଣତି । ୪) ଦେବତା ପ୍ରତି ଦୃଢ଼ବିଶ୍ୱାସ ସ୍ଥାପନ ଓ ତାର କରୁଣାରୁ ସ୍ଥାୟୀ ସୌଭାଗ୍ୟ ପ୍ରାପ୍ତି । କରମା କାହାଣୀର ସଂରଚନାରେ ମଧ୍ୟ ଏହି କ୍ରମଟି ରକ୍ଷିତ । ପ୍ରଥମେ ସାଧବ ବୁଢ଼ା କରମସାନୀକୁ ସ୍ୱୀକାର କରିଛି ଓ ସୌଭାଗ୍ୟ ପାଇଛି । ପରେ ଅସ୍ୱୀକାର କରି ........ ଇତ୍ୟାଦି ।

ଆଦିବାସୀ ସମାଜରେ ନୌସଭ୍ୟତା କୈନ୍ଦ୍ରିକ ଏମିତି ଏକ କାହାଣୀ ଆଶା କରାଯାଇ ନ ପାରେ । ପୁଣି ସାଧବ ପୁଅ ମାନଙ୍କର କରମସାନିକୁ ଅସ୍ୱୀକାର କାରଣଟି ଉଲ୍ଲେଖ ଯୋଗ୍ୟ । ଆର୍ଯ୍ୟଙ୍କର ନୀତିବଦ୍ଧ ଜୀବନରେ ସ୍ତ୍ରୀ ପୁରୁଷ ଏକତ୍ର ନାଚ ଗୀତ ସହ୍ୟ ହୋଇନି । ଏଣୁ ସାଧବପୁଅ ପୂଜାମଣ୍ଡପ ଭାଙ୍ଗି ଦେଇଛି । କରମସାନୀକୁ ପାଣିରେ ଭସେଇ ଦେଇଛି । ଏହାର ପରବର୍ତ୍ତୀ ଘଟଣା ଆଦିବାସୀ କାହାଣୀ ଧର୍ମୁ ଓ କର୍ମୁର ଅନୁରୂପ । ଉଭୟ କାହାଣୀର ନାୟକ ଦେବତାକୁ ଅସ୍ୱୀକାର ପରେ ଅନେକ ଦୁଃଖ କଷ୍ଟ ଭୋଗିଛନ୍ତି ଓ ଦେବତାର ଅନୁସନ୍ଧାନ ପାଇଁ ଯାତ୍ରା ଆରମ୍ଭ କରିଛନ୍ତି । ତାଙ୍କ ଦୁଃଖ ଦେବତାଙ୍କୁ ଜଣେଇବାର ପ୍ରତିଶ୍ରୁତି ଦେଇଚାଲିଛନ୍ତି । ଉଭୟ ଗଳ୍ପରେ ଲକ୍ଷ୍ୟ କରିବା କଥା ଚରିତ୍ରମାନଙ୍କ ସମସ୍ୟା ପ୍ରାୟ ସମାନ । (ଓଡ଼ିଆ ଲୋକଗୀତ କାହାଣୀ ଡ଼ଃ କୁଞ୍ଜବିହାରୀ ଦାସ-୧୭୫-୮୩) ଦେବତାର ଅନୁଗ୍ରହ ଲାଭ ଉପରେ ଉଭୟ କାହାଣୀର ନାୟକ ସୌଭାଗ୍ୟଶାଳୀ ହୋଇଛନ୍ତି । କାହାଣୀ ଦୁଇଟିକୁ ବିଶ୍ଳେଷଣ କଲେ ଦୁଇଟି କଥା ଜଣାପଡ଼େ । ଆଦିବାସୀ କାହାଣୀଟି ପରବର୍ତ୍ତୀ କାଳରେ କରମା

କାହାଣୀରେ ପରିବର୍ଦ୍ଧିତ ହୋଇଛି (ଆଦିବାସୀ ସମାଜର ମହିମା ପ୍ରଖ୍ୟାପକ କରମା କାହାଣୀ ଆଗରୁ ନ ଥିଲା) ସାଧବର /ଆର୍ଯ୍ୟର ଅସ୍ୱୀକାର ଓ ତାର କରୁଣ ପରିଣତିକୁ ଭିତ୍ତିକରି ଏହି ମହିମା ପ୍ରଖ୍ୟାପକ କାହାଣୀର ପରିବର୍ଦ୍ଧିତ ଅଂଶ ପ୍ରକ୍ଷିପ୍ତ (ଅଥଚ ପ୍ରଥମ କାହାଣୀର ନାୟକ ଜଣେ ଆଦିବାସୀ ଚରିତ୍ର) ।

କରମାର ସଙ୍ଗୀତରେ ରହିଛି ଆଦିବାସୀ ଛନ୍ଦ ଅନୁଭୂତିର ସ୍ୱଚ୍ଛନ୍ଦ ପ୍ରକାଶ । କରମାର ଗୀତ-ନୃତ୍ୟ ଆସରରେ ଆର୍ଯ୍ୟର ପ୍ରବେଶ ଖୁବ ସଙ୍କୋଚ । ଶ୍ରଦ୍ଧାଶୀଳ ଦୂରତାରେ ରହି ସେ କେବଳ ଉପଭୋଗ କରେ । ତଥାପି କରମାର ଗୀତରେ ଆର୍ଯ୍ୟର ନିୟନ୍ତ୍ରଣ ଲକ୍ଷ୍ୟ କରିହୁଏ । ଯେତେବେଳେ ମଦର ବିହ୍ୱଳ ନିଶାରେ ଓ ମାଦଳର ଉଦ୍ଦାମ ବାଦ୍ୟରେ ଆପେ ଆପେ ଅଶ୍ଳୀଳ ଗୀତ ସବୁ ବାହାରି ଆସେ ଦୂରରୁ ଥାଇବି ଆର୍ଯ୍ୟ ଭାବକୁ ନିୟନ୍ତ୍ରଣ କରେ । ସେ କହେ- "କରମାସାନୀ ବିରଝୁ ଅଛେ ହୁରିଆ କଥାକେ ।"(ରାମେସର ନାଗ -ପାଁଢ଼େଲ, ବଲାଙ୍ଗୀର) ।

କରମାସାନୀର ସଙ୍ଗୀତରେ ଥାଏ ସ୍ତୁତି, ପ୍ରାର୍ଥନା, ଜଣାଣ ଓ ତା ସହିତ ମଣିଷର ନିତିଦିନିଆଁ ଦୁଃଖ-ସୁଖ । କେତୋଟି କରମା ଗୀତରେ କରମାକୁ ପୌରାଣିକ ପୃଷ୍ଠଭୂମି ଓ ପ୍ରତିଷ୍ଠା ଦେବା ଚେଷ୍ଟା ସବୁ ଦେଖାଯାଏ । ଗୀତ ସବୁରେ କୁହାଯାଇଛି ଭଗବାନ ବିଭିନ୍ନ ଅବତାରରେ କରମା ନାଚିଛନ୍ତି । ଏହା ଆର୍ଯ୍ୟମାନଙ୍କର ମାନସିକ ହୋଇପାରେ କିମ୍ୱା ଆଦିବାସୀମାନଙ୍କର ଆର୍ଯ୍ୟମାନଙ୍କୁ ଆକୃଷ୍ଟ କରିବା ପାଇଁ ପ୍ରକ୍ଷେପ ସାନ୍ତ୍ୱନା ହୋଇପାରେ ।

ଆଦ୍ୟରେ କରମା ହେଲା ଶ୍ରୀବୃନ୍ଦାବନରେ
ପଶା ଖେଲୁଥିଲେ ହରି ସତ୍ୟଭାମା ତୁଲେ
ବଳରାମ ଧଇଲେ ମାଦଲ
ନାଚୁଥିଲେ ସୁଦାମ ସୁବଳ ।

(ରାମେସର ନାଗ -ପାଁଢ଼େଲ, ବଲାଙ୍ଗୀର)

ପଶ୍ଚିମ ଓଡ଼ିଶାରେ ପ୍ରଚଳିତ ଲୋକକାହାଣୀ ଗୁଡ଼ିକ ଦୁଇଟି ସଂବର୍ଗରେ ବର୍ଗୀକୃତ କରାଯାଇ ପାରେ । ୧। କୋଶଲୀ ଭାଷାରେକଥିତ, ଓଡ଼ିଆ କିମ୍ୱା ଆଦିବାସୀ କାହାଣୀ । ୨। ଉଭୟ କାହାଣୀର ମିଶ୍ରଣରେ ସୃଷ୍ଟି ଏକ ନୂତନ କାହାଣୀ । ଏହି ନୂତନ ସୃଷ୍ଟ କାହାଣୀଟି କରମା କାହାଣୀ ପରି ଏକ ଉଦ୍ଦେଶ୍ୟ ପ୍ରଣୋଦିତ

ହୋଇପାରେ କିମ୍ବା କଥକଙ୍କ ନୂତନ କାହାଣୀ ସୃଷ୍ଟି ପାଇଁ ପ୍ରୟାସର ଫଳଶୃତି ହୋଇପାରେ ।

॥ ୪ ॥

ଲୋକ-ଅଭିନୟ ଆଦିବାସୀ ସଂସ୍କୃତିରେ ବିରଳ । ଅଭିନୟ ମାଧ୍ୟମରେ ଗୋଟିଏ ଅତୀତର ଘଟଣାକୁ ରୂପାୟିତ କରିବା ସେ ସଂସ୍କୃତିରେ ମୋଟେ ହିଁ ନାହିଁ । ଆର୍ଯ୍ୟମାନଙ୍କର ଯାତ୍ରା, ପାଲା, ଦଣ୍ଡ, ସୁଆଙ୍ଗ, କାଠିନାଚ ପରି କାହାଣୀ ପ୍ରଖ୍ୟାପକ ଅଭିନୟ ବା / ଓ ନୃତ୍ୟ ପଶ୍ଚିମ ଓଡ଼ିଶାରେ ସୃଷ୍ଟ ଲୋକସଂସ୍କୃତିର ବିଶେଷତା ନୁହେଁ । ଉଭୟ ସଂସ୍କୃତିର ମଧୁର ସମନ୍ୱୟ ଏ କ୍ଷେତ୍ରରେ ଘଟିପାରି ନାହିଁ । ଆଦିବାସୀ ନୃତ୍ୟରେ ଥିବା ପ୍ରାଣପ୍ରାଚୁର୍ଯ୍ୟ ଓ ବାର୍ତ୍ତମାନିକ ଅନୁଭୂତିର ପ୍ରଖ୍ୟାପନ ପଶ୍ଚିମ ଓଡ଼ିଶାର ଲେକନୃତ୍ୟ ପାଇଁ ପ୍ରଧାନ ଅନ୍ତରାୟ ।

ନୃତ୍ୟ ଏକ ଦୃଶ୍ୟକଳା (Visual Art) । ତା'ର ପରିଚ୍ଛଳନା ଓ ଅଙ୍ଗବିଶେଷ ସମ୍ପର୍କରେ ମୁଁ ଏଠାରେ ବୁଝାଇ ପାରୁନାହିଁ । ଆଦିବାସୀ ନୃତ୍ୟର ରୂପାନ୍ତରିତ ରୂପ ହୁମୋ, ବାଙ୍ଗ୍‌ଚିଝୁଲି, ଗୁନଜିକୁଟା ଇତ୍ୟାଦି ପିଲାଖେଳ ଭାବରେ ଆର୍ଯ୍ୟ ସମାଜରେ ଅନୁପ୍ରବେଶ କରିଛି । ସଙ୍ଗୀତର ଭାଷା କୋଶଲୀ ଭାଷା । ପୁଣି କୋଶଲୀ ଭାଷାକୁ କଥିତ ଭାଷାରୂପେ ଗ୍ରହଣ କରିନେଇଥିବା ଆଦିବାସୀ ଗୋଷ୍ଠୀମାନଙ୍କରେ ଆଦିବାସୀ ନୃତ୍ୟର ଅଙ୍ଗବିକ୍ଷେପ ଓ ବାଦ୍ୟ ଥାଇ କୋଶଲୀ ଭାଷାରେ କେତେକ ଲୋକସଙ୍ଗୀତ ପରିଲକ୍ଷିତ ।

॥ ୫ ॥

ଆଶା କରୁଛି, ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତି ସମ୍ପର୍କରେ ଏକ ସ୍ଥୁଳ ଚିତ୍ର ଆପଣମାନଙ୍କ ନିକଟରେ ଉପସ୍ଥାପିତ କରିପାରିଛି । ପଶ୍ଚିମ ଓଡ଼ିଶାର ଯେଉଁ ଦୁଇଟି ସଂସ୍କୃତିର ସଂଘର୍ଷ ଓ ସହାବସ୍ଥାନ ଘଟିଛି ଉଭୟଟି ଆପଣଙ୍କର ପରିଚିତ । ତା'ର ସହାବସ୍ଥାନ ଓ ସମନ୍ୱୟର ଚିତ୍ର ପ୍ରଦାନ ପାଇଁ ମୁଁ ଚେଷ୍ଟା କରିଛି । ପ୍ରବନ୍ଧଟି ଆପଣଙ୍କ ମତାମତ ଓ ବିଚ୍ଛର ବିମର୍ଷ ପାଇଁ ଉନ୍ମୁକ୍ତ ରହିଲା ।

*(ବିଶ୍ୱଭାରତୀ ଦୀପିକା, ୧୯୮୭)*

# ଉଲ୍ଲାସ ଓ ଅଭିନୟ:
# କୋଶଲୀ ନୃତ୍ୟର ବ୍ୟାକରଣ ଅନ୍ୱେଷଣରେ

ନୃତ୍ୟପରି ଅଭିକରଣ ଶିଳ୍ପର ଆଲୋଚନାରେ ଅସୁବିଧା ଦୁଇଟି । ପ୍ରଥମତଃ ଦୃଶ୍ୟଧର୍ମୀ ଏକ ଘଟଣାକୁ ଭାଷା ସବୁବେଳେ ବର୍ଣ୍ଣନା କରିପାରେ ନାହିଁ । ଦ୍ୱିତୀୟତଃ ନୃତ୍ୟ ବର୍ଣ୍ଣନାରେ ଯେଉଁ ପାରିଭାଷିକ ଶବ୍ଦାବଳୀ ବ୍ୟବହୃତ ହୁଏ, ଜନସାଧାରଣରେ ତାର ପ୍ରଚଳନ ହିଁ ନାହିଁ । ଏଣୁ ପରମ୍ପରା କ୍ରମେ ନୃତ୍ୟ ଏକ ଗୁରୁ ସର୍ବସ୍ୱ କଳା ହୋଇ ପଡ଼େ । ବିଭିନ୍ନ ଗୁରୁ ମାଧ୍ୟମରେ ନୃତ୍ୟଶୈଳୀ ସବୁ ଆସ୍ତେ ଆସ୍ତେ ପାରିଭାଷିକ ଶବ୍ଦାବଳୀରେ ସମୃଦ୍ଧ ହୁଏ ଏବଂ ଶାସ୍ତ୍ରୀୟ ନୃତ୍ୟ ଶୈଳୀଟିଏ ଅଭିରଚିତ ହୁଏ । କୌଣସି ଏକ ଲୋକନୃତ୍ୟକୁ ଶାସ୍ତ୍ରୀୟ ମର୍ଯ୍ୟାଦା ଦେବା ଆବଶ୍ୟକ କି ନା ତାହା ଏକ ଭିନ୍ନ ପ୍ରଶ୍ନ । କିନ୍ତୁ ବର୍ତ୍ତମାନର ନୃତ୍ୟସବୁ ନିଜସ୍ୱ ପାରମ୍ପରିକତା ହରାଇ ଯାଉଥିବା ବେଳେ କୌଣସି ଲୋକନୃତ୍ୟକୁ ସୁରକ୍ଷା ଓ ନିଜସ୍ୱ ଭଙ୍ଗିମାରେ ପରିବେଷଣ ପାଇଁ ନୃତ୍ୟ ବ୍ୟାକରଣଟିଏ ରଚନାର ଆବଶ୍ୟକତା ଅନିବାର୍ଯ୍ୟ ।

ଲୋକନୃତ୍ୟର ଶୈଳୀ ଯଦି ଉନ୍ମୁକ୍ତ ହୁଏ, ଯିଏ ଯେଉଁଠି ଯାହା ଜାଣେ, ଯାହା ସୁନ୍ଦର ମନେକରେ ଉପସ୍ଥାପନ କରିଚାଲେ, ବେଲେ ଓ ରକ୍ ଡ଼େନ୍‌ସ, ଓଡ଼ିଶୀ ଓ ମଣିପୁରୀ ସବୁ ଏକାକାର ହୋଇ ଯିବ ହିଁ ଯିବ । ତାହା ନୃତ୍ୟାମୋଦୀମାନଙ୍କୁ ଆନନ୍ଦ ବା ନିରାନନ୍ଦ ଦେବ, ଏହା ଭିନ୍ନ କଥା, ତେବେ ଆମ ସମସ୍ତଙ୍କର ସାଂସ୍କୃତିକ ଅସ୍ମିତା, ଜୀବନକୁ ଓ ଜଗତକୁ ବୁଝିବାର ସାଂସ୍କୃତିକ ଦୃଷ୍ଟିଭଙ୍ଗୀ, ଆମ ପାଡ଼ିରେ ହିଁ ଲୋପ ପାଇଯିବ । ଏଣୁ ଆଜିର ଏଇ ବିଶ୍ୱଗ୍ରାମରେ ଆମେ ସମସ୍ତେ ଆଞ୍ଚଳିକ ଓ ନିଜସ୍ୱ ସାଂସ୍କୃତିକତା ପ୍ରତି ସଚେତନ ହେବା ଏକ ପ୍ରକାର ଆବଶ୍ୟକତା ।

ଏ ଉଭୟ କଥାକୁ ପୃଷ୍ଠଭୂମିରେ ରଖି କୋଶଲୀ ନୃତ୍ୟକୁ ଏବେ ଆଲୋଚନା କରିବା । କୋଶଲୀ ନୃତ୍ୟ ପ୍ରାଚୀନ କୋଶଳର କିମ୍ବା କୌଣସି ଏକ ଐତିହାସିକ କାଳର ନୃତ୍ୟ ନୁହେଁ । ଏହା ଏକ ବିଶାଳ ଭୁଖଣ୍ଡର ଏବେ ଯାଏଁ ପ୍ରଚଳିତ ନୃତ୍ୟମାନଙ୍କର ସମାହାରରେ ଗଢ଼ି ଉଠିଥିବା ନୃତ୍ୟଶୈଳୀ । ପ୍ରାଚୀନ ଇତିହାସ ବହିରେ, ମନ୍ଦିର ଗାତ୍ରରେ, ତାଳପତ୍ର ପୋଥିରେ କିମ୍ବା ଶାସ୍ତ୍ରମାନଙ୍କରେ ଏହାର ନାମ, ଭଙ୍ଗିମା, ଆଙ୍ଗିକ, ଅଙ୍ଗହାର, କରଣ ଓ ରୀତି ଖୋଜିଲେ ବର୍ତ୍ତମାନ ଆମେ ହତାଶ ହେବା । ଆହୁରି ହତାଶ ହେବା ଯଦି ଏହାକୁ ଆମେ ପ୍ରଚଳିତ ରସର୍କେଲୀ, ଡ଼ାଲଖାଇ ରୀତିରେ ସମ୍ବଲପୁରୀ ନୃତ୍ୟ ଇତ୍ୟାଦି କହି ସସୀମ ଓ ସୀମାବଦ୍ଧ କରଦେବା । ଏଠି କୋଶଲୀ ନୃତ୍ୟ ଶବ୍ଦଟି ବୃହତ୍ତର ଅଭିଧାଯୁକ୍ତ । ମୟୁରଭଞ୍ଜାରୁ କୋରାପୁଟ ଯାଏଁ ବିଶାଳ ଭୂଖଣ୍ଡର ଯେଉଁସବୁ ନୃତ୍ୟରେ ରସ, ଗୀତ ଓ ଅଭିନୟ ଠାରୁ ଉଲ୍ଲାସ, ବାଦ୍ୟ ଓ ନୃତ୍ତ ଅଧିକ ତାହାହିଁ କୋଶଲୀ ନୃତ୍ୟ । ଝୁମେର ଓ ଛଉ, ଘୁମୁରା ଓ ଗଉରବାଡ଼ି, ରସରକେଲୀ ଓ ଡ଼ାଲଖାଇ, କରମା ଓ ନଚନିଆ ଏ ସମସ୍ତ ଏଇ ନୃତ୍ୟ ଶୈଳୀର ଭିନ୍ନ ଭିନ୍ନ ରୂପ । ଯେଉଁଠି ନୃତ୍ୟକାରୀକୁ ଅଳ୍ପ କିଛି ବିରତି ଦେବା ପାଇଁ ଆସେ ଗୀତ । ଗୀତ କେବେ ବି ମୁଖ୍ୟ ନୁହେଁ । ବାଦ୍ୟ ଓ ନୃତ୍ତରୁ ହିଁ ଦର୍ଶକ ନିକଟକୁ ଲହଁକି ଯାଏ ରସ, ଅଭିନୟ ଲୋଡ଼ା ପଡ଼େନା, ତାହା ହିଁ କୋଶଲୀ ନୃତ୍ୟ । ଏଇ ନୃତ୍ୟ ଶୈଳୀକୁ ବୁଝିବା ପାଇଁ କୋଶଳର ସାଂସ୍କୃତିକ ବିନ୍ୟାସ ଏବଂ ପରିମଣ୍ଡଳକୁ ପ୍ରଥମେ ବୁଝିବାକୁ ହେବ ।

ଖ୍ରୀଷ୍ଟପୂର୍ବ ଶତାବ୍ଦୀମାନଙ୍କରୁ ଆଧୁନିକ ପଶ୍ଚିମ ଓଡ଼ିଶା ବା ମଧ୍ୟଯୁଗର ଦକ୍ଷିଣ କୋଶଳ ଥିଲା ଆର୍ଯ୍ୟ ଓ ଅନାର୍ଯ୍ୟମାନଙ୍କର ସଂଘର୍ଷ ଓ ସମନ୍ୱୟର ଭୂମି । ଏଠି ନିଜର ସାଂସ୍କୃତିକ ସମୁନ୍ନତି ସତ୍ତ୍ୱେ ଦୂରାଗତ ଆର୍ଯ୍ୟମାନେ ଆପଣାର ଅସ୍ମିତା ବିନିମୟରେ ଜୀବନ ସହ ସବୁବେଳେ ବୁଝାମଣା କରିଚାଲିଛନ୍ତି । ଏ ବୁଝାମଣାର ଆନୁପାତିକତା ଆଧୁନିକ ଆଦିବାସୀ ଅଧ୍ୟୁଷିତ ସୁନ୍ଦରଗଡ଼ ଓ କୋରାପୁଟରେ ଅଲଗା ଏବଂ ଆଜିର କେନ୍ଦ୍ର ପଶ୍ଚିମ ଓଡ଼ିଶା ବା କେନ୍ଦ୍ର ଦକ୍ଷିଣ କୋଶଳରେ ଅଲଗା । ଏଣୁ ମୟୁରଭଞ୍ଜ, ସୁନ୍ଦରଗଡ଼ଠୁଁ ଆରମ୍ଭ ହୋଇଥିବା ସାଂସ୍କୃତିକ ଧାରାଟି କୋରାପୁଟ ଯାଏଁ ପ୍ରଲମ୍ବିତ, ଆପଣାର ଭୋକ, ଦୁଃଖ, ଉଲ୍ଲାସ, ଅଭିଳାଷ, ଆଗ୍ରହ, ଅଭିଯୋଗ ସବୁଦୃଷ୍ଟିରୁ । ଏଠି

ନିଜ ଆନନ୍ଦକୁ ପ୍ରଖ୍ୟାପନ ପାଇଁ ଯେଉଁ ନୃତ୍ୟ ଓ ଗୀତର ପରମ୍ପରା ଥିଲା, ତାହା ପ୍ରାଚୀନ ଆର୍ଯ୍ୟ ପରମ୍ପରା ଠାରୁ ନିଶ୍ଚୟ ଭିନ୍ନ । ଏ ସମସ୍ତ ଅଞ୍ଚଳର ସାରସ୍ୱତ ଅଭିବ୍ୟକ୍ତି ଥିଲା (ତାହା ନୃତ୍ୟ, ବାଦ୍ୟ, ସଙ୍ଗୀତ, ଚିତ୍ର, ବା ସାହିତ୍ୟ ଯାହା ବି ହେଉ) ମୂଳତଃ ସ୍ୱତଃସ୍ଫୁର୍ତ୍ତ, ଉଲ୍ଲାସଧର୍ମୀ ଏବଂ ସର୍ବୋପରି ଅସଂରକ୍ଷିତ ବା ଅଲିଖିତ । ଏ ଉଲ୍ଲାସ ସବୁ ପୀଢ଼ିରୁ ପୀଢ଼ିକୁ ସଂପ୍ରେଷିତ ହୋଇ ଯଦିଓ କିଛି ମାତ୍ରାରେ ଆମର ଭାଷା ପରି ସଂରକ୍ଷିତ ହୋଇ ଚାଲିଥିଲା । ଏ କାଳରେ ଘଟିଥିବା ଏଇ ଘଟଣାର କିଂଚିତ ସ୍ମୃତି ରହିଛି, ଭରତ ମୁନିଙ୍କ ନାଟ୍ୟଶାସ୍ତ୍ରରେ । (ଭରତ ମୁନିଙ୍କର ନାଟ୍ୟଶାସ୍ତ୍ରର ରଚନା କାଳ ଖ୍ରୀଷ୍ଟପୂର୍ବ ବା ପର ପ୍ରଥମ ଶତାବ୍ଦୀ ଏବଂ କେତେକ ବିଦ୍ୱାନଙ୍କ ମତରେ ନାଟ୍ୟ ଶାସ୍ତ୍ରର ରଚୟିତା ଭରତ ମୁନି ମଧ୍ୟଦେଶର ଜଣେ ନାଟ୍ୟଶିଳ୍ପୀ) ।

ନାଟ୍ୟଶାସ୍ତ୍ରରେ ନାଟ୍ୟୋତ୍ପତ୍ତି ପ୍ରସଙ୍ଗରେ କୁହାଯାଇଛି, ପ୍ରଥମ ରଙ୍ଗପୀଠ ରଚନାପରେ ଯେଉଁ ନାଟ୍ୟବସ୍ତୁ ପ୍ରଦର୍ଶିତ ହେଲା ତାହା ଥିଲା ଦେବ ବିଜୟର ଏକ କାହାଣୀ । ଏ କାହାଣୀ ଦେଖିବା ପରେ ଦୈତ୍ୟମାନେ କ୍ଷୁର୍ଣ୍ଣହେବା ସ୍ୱଭାବିକ । ଏଣୁ ନାଟ୍ୟାରମ୍ଭ ବେଳେ ଦୈତ୍ୟମାନେ ବିଘ୍ନ ଘଟାଇଲେ । ନାଟକ କେବେବି ଏକ ଗୋଷ୍ଠୀର ଜୟଗାଥା ହୋଇ ପାରେନା । ନାଟକ ସବୁବେଳେ ସମସ୍ତଙ୍କର । ଏଣୁ ବ୍ରହ୍ମା ପରବର୍ତ୍ତୀ ନାଟକ ଆୟୋଜନ କଲାବେଳେ ଦେବ ଓ ଦୈତ୍ୟ ଉଭୟଙ୍କର ନାଟ୍ୟକଥା ଓ ନାଟ୍ୟଶୈଳୀର ସମ୍ମିଶ୍ରଣ କଲେ ।

ଅଲଂବୋ ମନ୍ୟୁନା ବିଷାଦ ସ୍ତ୍ୟଜ୍ୟତାମୟେ
ଭବତାଂ ଦେବତାନାଂ ଶୁଭାଶୁଭ ବିକଳ୍ପକୈଃ ॥୧୦୧॥
କର୍ମଭାବାନ୍ୱୟାଦେଷୋ ନାଟ୍ୟବେଦୋ ମୟା କୃତଃ
ନୈକାନ୍ତତୋତ୍ର ଭବତାଂ ଦେବାନାଂ ଚାପି ଭାବନଂ ॥୧୦୨॥
ତ୍ରୈଲକ୍ୟସ୍ୟାସ୍ୟ ସର୍ବସ୍ୟ ନାଟ୍ୟଭାବାନୁକୀର୍ତ୍ତନଂ
କ୍ୱଚିତଧର୍ମଃ କ୍ୱଚିତ କ୍ରୀଡ଼ା, କ୍ୱଚିତ ଅର୍ଥ, କ୍ୱଚିତ ଶ୍ରମଃ ॥୧୦୩॥

(ନାଟ୍ୟଶାସ୍ତ୍ର ପ୍ରଥମ ଅଧ୍ୟାୟ)

ଦେବତାମାନଙ୍କ ଦ୍ୱାରା ପ୍ରଥମ ପରିବେଷିତ ନାଟକ ଥିଲା ମୂଳତଃ : ଦେବବୃତ୍ତ୍ୟାନୁକରଣଂ । କିନ୍ତୁ ବିଘ୍ନ ପରେ ଯେଉଁ ନୂତନ ନାଟକଟି ଉପସ୍ଥାପିତ ହେଲା, ସେଠି ଜଗତର ସମସ୍ତ ପ୍ରାଣୀଙ୍କର କର୍ମ, କ୍ରୀଡ଼ା, ଶ୍ରମ, ଧର୍ମ, ଅର୍ଥ ଇତ୍ୟାଦି ସମସ୍ତ ଲୋକବୃତ୍ତି ଅନୁକୃତ ହେବା ସହ ସମସ୍ତେ ସଂଦର୍ଶନ ଓ ସହଭାଗିତା ପାଇଁ ସୁଯୋଗ ପାଇଲେ । ବ୍ରହ୍ମାଙ୍କର ଆଦେଶରେ ଏଣୁ ଅଭିନୀତ ହେଲା ଅମୃତ ମନ୍ଥନ ସମବକାର ଯେଉଁଠି ଅସୁର ଦେବତା ଉଭୟଙ୍କର ସହଭାଗିତା ହିଁ ପ୍ରତିପାଦ୍ୟ । ପରେ ବ୍ରହ୍ମା, ଶିବଙ୍କ ଅନୁରୋଧରେ ଏହି ଅନୁକରଣ ପୂର୍ଣ୍ଣ ନାଟକରେ ଯୋଡ଼ିଲେ ପୂର୍ବରଙ୍ଗ ଏବଂ ନୃତ୍ତ । (ନୃତ୍ତ ହେଉଛି ଉଲ୍ଲାସ ପୂର୍ଣ୍ଣ ଅଙ୍ଗବିକ୍ଷେପ) । ଶିବଙ୍କର ଏହି ସଂଯୋଜନା ସମଗ୍ର ଭାରତୀୟ ନାଟ୍ୟ ଆଲୋଚନାରେ ଗୁରୁତ୍ୱପୂର୍ଣ୍ଣ । କେବଳ ଅନୁକରଣକୁ ନିରସ ମନେକରି "କରଣ ଏବଂ ଅଙ୍ଗହାର" ସମନ୍ୱିତ ନୃତ୍ତରୁ ହିଁ ନାଟ୍ୟାରମ୍ଭର ଯେଉଁ ବ୍ୟବସ୍ଥା ଶିବ କଲେ ତାହା ପରବର୍ତ୍ତୀ କାଳରେ ଭାରତୀୟ ନାଟ୍ୟଶୈଳୀରେ "ମହାଗୀତ" ମଧ୍ୟରେ ନୃତ୍ତର ବ୍ୟବସ୍ଥା ପାଇଁ ସୁଯୋଗ ଆଣିଥିଲା । ଏବେ ମଧ୍ୟ ଲୀଳା ନାଟକ ମାନଙ୍କରେ ଗୀତ ମଝିରେ ଯେଉଁ ନୃତ୍ତର ପ୍ରଚଳନ ରହିଛି, ତାହାର ଆରମ୍ଭ ସେହି "ଶିବ ବାକ୍ୟ"ରେ ଆମେ ଖୋଜିପାରିବା । ପୁଣି ଅଧୁନା ପ୍ରଚଳିତ ଦଣ୍ଡନୃତ୍ୟରେ ଯେଉଁ ଅଗ୍ନିଦଣ୍ଡ ବେଳେ ଓ ପ୍ରଭାନୃତ୍ୟରେ ଯେଉଁ ଅଭିନୟ ଶୂନ୍ୟ ବିଶୁଦ୍ଧ ନୃତ୍ତର ପ୍ରଚଳନ ରହିଛି, ତାହା ଆମ ପ୍ରାଚୀନ ପୂର୍ବରଙ୍ଗର ପରିଚୟକ ।

ଏ କାହାଣୀରେ ଭରତ ମୁନି ଯେଉଁ ଦୁଇଟି ଗୋଷ୍ଠୀର ସଂଘର୍ଷ ଓ ସହାବସ୍ଥାନର କଥା କହିଛନ୍ତି, ତାହା ନିଶ୍ଚୟ ଆଦିବାସୀ ଓ ଆର୍ଯ୍ୟ ସଂସ୍କୃତି । ପୌରାଣିକ ଶୈଳୀରେ ଏମାନେ ଦେବ ଓ ଦାନବ କୁହାଗଲେ ହେଁ, ସାଂସ୍କୃତିକ ସ୍ମୃତି ଚିହ୍ନ ଦୃଷ୍ଟିରୁ ଏଇ ଉଭୟ ସଂସ୍କୃତିରେ ଆଜି ବି ଅଭିନୟ ଓ ଉଲ୍ଲାସକୁ କେନ୍ଦ୍ରକରି ଭିନ୍ନ ଦୁଇଟି ଶୈଳୀକୁ ଆମେ ଲକ୍ଷ୍ୟ କରି ପାରିବା । ଆଦିବାସୀ ନାଟ୍ୟ ସଂସ୍କୃତି ମୂଳତଃ ଉଲ୍ଲାସଧର୍ମୀ ଏବଂ ଆର୍ଯ୍ୟ ନାଟ୍ୟ ସଂସ୍କୃତି ଅନୁକରଣପ୍ରିୟ ଓ ଅଭିନୟ ନିପୁଣ । ଏହାହିଁ ଦୁଇଟି ଭିନ୍ନ ସାଂସ୍କୃତିକ ଜୀବନବୋଧର ପରିଚୟକ । ଅତୀତ ପ୍ରତି, ଘଟଣା ପ୍ରତି, ଇତିହାସ ପ୍ରତି, ଦୁଇଟି ସଂସ୍କୃତିରେ ଯେଉଁ ଭିନ୍ନତା ପରିଲକ୍ଷିତ ହୁଏ, ଏହା ତାହାର ନୈର୍ଭାଷିକ

ପ୍ରକାଶ । ଏ ପ୍ରସଙ୍ଗରେ ଆଉ ଏକ କଥା ସ୍ମରଣଯୋଗ୍ୟ । ଶିବଙ୍କ ଆଦେଶ / ଅନୁରୋଧରେ ବ୍ରହ୍ମା ନାଟକରେ "ନୃତ୍ତ"ର ପ୍ରଚଳନ ପାଇଁ ଅନୁମତି ଦେଇଥିଲେ ହେଁ, ଉଲ୍ଲାସମୟ ନୃତ୍ତ ସମ୍ପର୍କୀୟ ବିଶେଷ ଜ୍ଞାନ ଭରତ ଏବଂ ତାଙ୍କ ଶିଷ୍ୟମାନଙ୍କର ନ ଥିଲା । ଫଳରେ ଶିବଙ୍କ ଆଦେଶରେ ତଣ୍ଡୁ ଭରତଙ୍କୁ ନୃତ୍ତର ଅଙ୍ଗହାର ସମ୍ପର୍କରେ ଶିକ୍ଷା ଦେଲେ । ଶିବ ପ୍ରତିଦିନ ସନ୍ଧ୍ୟାରେ କରୁଥିବା ନୃତ୍ତ ଓ ବ୍ରହ୍ମାଙ୍କ କାହାଣୀ ମୂଳକ (ଭାବ ଓ ରସ ପ୍ରଧାନ) ନାଟକର ସମ୍ମିଶ୍ରଣରେ ହିଁ ଭାରତର ନାଟ୍ୟ ଶୈଳୀର ଆରମ୍ଭ ହେଲା । (ନାଟ୍ୟ ଶାସ୍ତ୍ର ଚତୁର୍ଥ ଅଧ୍ୟାୟ, ୧୩-୧୮) । ଆରମ୍ଭରୁ ଏଣୁ ଭାରତୀୟ ନାଟ୍ୟଶୈଳୀ ଆର୍ଯ୍ୟ ଓ ଅନାର୍ଯ୍ୟ ନାଟକ ଓ ନୃତ୍ତର ମଧୁର ସମ୍ମିଶ୍ରଣ ।

ପରବର୍ତ୍ତୀ କାଳରେ ଏ ଅଞ୍ଚଳରେ ଯେଉଁ ଉଲ୍ଲାସରୁ ଅଭିନୟ ଆଡ଼କୁ ଉନ୍ମୁଖ ଏକ ନାଟ୍ୟ ଓ ନୃତ୍ତ ଶୈଳୀର ବିକାଶ ଘଟିଲା, ତାହା ଆଜି ଆମ ପାଇଁ ଅଜ୍ଞାତ । ସମୟକ୍ରମେ ଉଲ୍ଲାସ ନୃତ୍ତରୁ ଅପସରି ଯାଇ ଅଭିନୟ ହିଁ ନୃତ୍ୟ ନାମରେ ପରିଚିତ ହେଲା । ପରେ ବିଶୁଦ୍ଧ ନୃତ୍ତରେ ବି ରସାଶ୍ରୟୀ କାହାଣୀଟିଏ ଖଞ୍ଜି ନୃତ୍ୟକୁ କାହାଣୀ ପ୍ରଦର୍ଶନର ମାଧ୍ୟମ ରୂପେ ବ୍ୟବହାର କରାହେଲା । ନୃତ୍ୟ ରସର ଆଧେୟ ହୋଇ ସୁଧୀ ସମାଜରେ ମୁଦ୍ରା ଏବଂ ଭଙ୍ଗିମା ମାଧ୍ୟମରେ ରସାମୋଦ ପ୍ରଦାନ କଲା । ନାଟ୍ୟ କାହାଣୀର ପ୍ରଖ୍ୟାପନ ପ୍ରଦର୍ଶନ ପାଇଁ ଯେଉଁ ମୁଦ୍ରା, ନ୍ୟାସ, ଭଙ୍ଗୀ, ଚେଷ୍ଟା ଓ ପ୍ରୟୋଗ ଭରତ ମୁନି ନାଟ୍ୟଶାସ୍ତ୍ରରେ ବର୍ଣ୍ଣନା କରିଛନ୍ତି, ଏବେ ତାଙ୍କ ବର୍ଣ୍ଣିତ ନୃତ୍ତ ପାଇଁ ତାହା ବ୍ୟବହାର କରାଗଲାଣି । ଷୋଡ଼ଶ ଶତାବ୍ଦୀରେ ରଚିତ "ଅଭିନୟ ଚନ୍ଦ୍ରିକା" ରଚନା ବେଳକୁ ଓଡ଼ିଶାର ଆର୍ଯ୍ୟାୟିତ ଲୋକନୃତ୍ୟ ଅଧିକ ଅଭିନୟାତ୍ମକ ହୋଇ ଶାସ୍ତ୍ରୀୟତା ଆଡ଼କୁ ଉନ୍ମୁଖ ହୋଇ ସାରିଥିଲା । ଏଣୁ "ଅଭିନୟ ଚନ୍ଦ୍ରିକା"ରେ ବିଭିନ୍ନ ଆର୍ଯ୍ୟାୟିତ ଅଞ୍ଚଳର ନୃତ୍ୟକୁ ବର୍ଣ୍ଣନା ପ୍ରସଙ୍ଗରେ ମଗଧର ନୃତ୍ୟକୁ ଭାବ ପ୍ରଧାନ, ସୁରସେନର ନୃତ୍ୟକୁ ଅଙ୍ଗଚାଳନ ମୂଳକ କହିଲାବେଳେ କୁହାଯାଇଛି "ଭାବ ପ୍ରଦର୍ଶନେ ଉତ୍ତମ୍, ଖ୍ୟାତଂ ଅତ୍ର ନ ସଂଶୟଃ ।"

କୋଶଳର ନୃତ୍ୟ ଶୈଳୀଟି କିନ୍ତୁ ସେତେବେଳେ ବି ଥିଲା ଉଲ୍ଲାସମୂଳକ କିମ୍ବା କ୍ୱଚିତ୍ ସ୍ୱତଃସ୍ଫୁର୍ତ୍ତ ସଙ୍ଗୀତ ଯୁକ୍ତ । ଅଭିନୟ ପ୍ରତି ଏ ବିମୁଖତାର କାରଣ ଯାହା

ବି ହେଉ, ଉଲ୍ଲାସରୁ ଯେଉଁ ସ୍ୱତଃସ୍ଫୂର୍ତ୍ତ ଭଙ୍ଗୀସବୁ ଜନ୍ମନେଲା ତାହା ଆଜିଯାଏଁ ପରମ୍ପରା କ୍ରମେ ଏ ଅଞ୍ଚଳର ଲୋକଙ୍କ ଭିତରେ ଚଳିଆସିଛି । ଓଡ଼ିଶୀ ନୃତ୍ୟ ପାଇଁ ଯେମିତି କୁହାଯାଏ :

"ଉଠା, ବଇଠା, ଠିଆ ବାଲି,
ବୁଡ଼ା, ଭସା, ଭଉଁରୀ, ପାଲି,
ଓଡ଼ିଶୀ ନାଟର ଏ ଆଠ ବେଲି"

କୋଶଲୀ ନୃତ୍ୟର ସେମିତି ଭଙ୍ଗୀମାନଙ୍କୁ ନାମ ପ୍ରଦାନ କଲେ ହିଁ ଏହି ଅଞ୍ଚଳର ନୃତ୍ୟର ବିଶେଷତା ଆଲୋଚନା ପାଇଁ ପଥ ସୁଗମ ହେବ । ପ୍ରଥମେ କୋଶଲୀ ନୃତ୍ୟରେ ପରିବେଷିତ ନୃତ୍ୟାଣୁମାନଙ୍କର (Dance Motif) ନାମକରଣ ହେଲେ ସିନା ଏହାର ବିନ୍ୟାସ, ବିତରଣ, ଆବେଦନ ଓ ବ୍ୟବହାର ବିଷୟରେ ଆଲୋଚନା କରାଯାଇ ପାରିବ । ପୁଣି ଏଇ ନୃତ୍ୟାଣୁ ଗୁଡ଼ିକ ନାଟ୍ୟ ଶାସ୍ତ୍ରରେ ବର୍ଣ୍ଣିତ କରଣ, ଅଙ୍ଗକାର ପରି ହେଲେ ବି ଆଲୋଚନାର ସୁବିଧା ପାଇଁ ଆମ ଭାଷାରେ ହିଁ ଏଗୁଡ଼ିକର ନାମକରଣ କରିବାକୁ ହେବ । ଯଦିଓ ଗୋଟିଏ ନୃତ୍ୟାଣୁରେ ଶରୀରର ବିଭିନ୍ନ ଅଂଶରେ ଭିନ୍ନ ଭିନ୍ନ ବିକାର ପରିଲକ୍ଷିତ ତଥାପି ଏହାକୁ ସାମଗ୍ରିକ ଭାବରେ ଗୋଟିଏ ନାମରେ ଆଲୋଚନା କରିବା ହିଁ ହେବ ସୁବିଧାଜନକ । ପରିଚିହ୍ନର ସୁବିଧା ଦୃଷ୍ଟିରୁ ଏଠି ଆମ ଅଞ୍ଚଳର ଶିଶୁମାନେ ଖେଳୁଥିବା ବିଭିନ୍ନ ଖେଳର ଅଙ୍ଗଭଙ୍ଗୀକୁ ପ୍ରଥମେ ଗ୍ରହଣ କରାଯାଉ । ଯେମିତି, ଛୁରକି, ହୁମୋ, ବାଙ୍ଗରି, ଛିଲୋଲାଇ, ଠିଆପୁଚି ନାରଙ୍ଗ ଇତ୍ୟାଦି । ଏ ସମସ୍ତ ଖେଳ ନୃତ୍ୟ ଶିକ୍ଷାର ଏକ ଏକ ଅଂଶ । ଠିକ୍ ସେମିତି ଅନ୍ୟାନ୍ୟ ଅଙ୍ଗଭଙ୍ଗୀମାନଙ୍କୁ ନୃତ୍ୟରୁ ଅଲଗା କରି ଦେଖିଲେ ମନେ ହୁଏ ଆମ ଦୈନନ୍ଦିନ ଜୀବନର ଏହା ଏକ ଏକ ଭଙ୍ଗୀ । ସମବେତ ଭାବରେ ଦଳେ ଯୁବକ କିମ୍ବା ଯୁବତୀ ଏହା ପରିବେଷଣ କଲେ ଯେଉଁ ସାମଗ୍ରିକ ସୌନ୍ଦର୍ଯ୍ୟ ଉପସ୍ଥାପିତ ହୁଏ, ତାହା ହିଁ ଏ ଶୈଳୀର ବିଶେଷତା । ନୃତ୍ୟରେ ଏ ସମସ୍ତର ବ୍ୟବହାରକୁ ପ୍ରଥମେ ଏଇ ନାମରେ ଚିହ୍ନିତ କରାଯାଇପାରେ । ଠିକ୍ ସେପରି ଅନ୍ୟାନ୍ୟ ଭଙ୍ଗୀ ପାଇଁ ଗୋଟିଏ ଗୋଟିଏ ନାମ ଖୋଜି ସମଗ୍ର ନୃତ୍ୟ ବିନ୍ୟାସର ବ୍ୟାଖ୍ୟା କରାଯାଇପାରେ ।

ପ୍ରଥମରୁ କହିଛି ଲୋକନୃତ୍ୟର ଆଲୋଚନା ପାରିଭାଷିକ ଶବ୍ଦାବଳୀ ଅଭାବରୁ ଏକ କଠିନ କର୍ମ । ଏଣୁ ଆମ ନୃତ୍ୟଶୈଳୀରେ ଥିବା ଭଙ୍ଗୀମାନଙ୍କର ଏକ ଦୀର୍ଘ ତାଲିକା କରି ପ୍ରଥମେ ଏହାର ନୃତ୍ୟାଣୁମାନଙ୍କୁ ଆବିଷ୍କାର କରିବାକୁ ପଡ଼ିବ । ନୃତ୍ୟାଣୁମାନଙ୍କର ବିନ୍ୟାସରେ ହିଁ ଉପସ୍ଥାପିତ ହୁଏ ମନୋମୁଗ୍ଧକର ନୃତ୍ୟ । କିନ୍ତୁ ଯଦି ଆମେ ଏହି ନୃତ୍ୟାଣୁମାନଙ୍କୁ ପରିଚିହ୍ନିତ କରିବା ନାହିଁ, ନୃତ୍ୟପରେ ଏ ସମ୍ପର୍କରେ ଆଲୋଚନା ପାଇଁ ଆମ ନିକଟରେ ଶବ୍ଦ ହିଁ ନଥିବ ।

ଯେମିତି ପ୍ରାଚୀନ କାଳରୁ ଆମ ଅଞ୍ଚଳରେ ନୃତ୍ୟର ପରମ୍ପରା ଚାଲି ଆସିଥିଲେ ହେଁ ତାକୁ ବିଚାର ଆଲୋଚନା କରିବା ପାଇଁ ଆଜି ବି ଆମ ନିକଟରେ ଶବ୍ଦର ଅଭାବ । ଦୁଇ ଅଣ୍ଟାରେ ହାତ ଦେବା, ଗାଲରେ ହାତ ଦେଇ ଗୋଟିଏ ପଟକୁ ନଇଁ ନଇଁ ଚାଲି ତେରଛି ଚାହିଁବା ଏମିତି ଅନେକ ଅନେକ ଭଙ୍ଗୀ ପାଇଁ ଏବେ ମଧ୍ୟ ଆମେ ଶବ୍ଦ ଖୋଜି ପାରିନାହୁଁ । ଠିକ୍ ସେମିତି ବିଭିନ୍ନ ପ୍ରକାର ଚାଲିବା, ପାଦ ପକେଇବା, ଆଖି, ଓଠ, କପାଳ, ମୁହଁକୁ ଅର୍ଥପୂର୍ଣ୍ଣ ଭାବରେ ପ୍ରଦର୍ଶନ କରିବା ଶୈଳୀକୁ ଆମେ ଚିହ୍ନିତ କରିନାହୁଁ । ଯେତେ ଦିନଯାଏଁ ଆମେ ଏହା କରିପାରିବା ନାହିଁ ସେତେଦିନ ଯାଏଁ ଆମ ନୃତ୍ୟାଲୋଚନା "ବାଃ ଖୁବ୍ ଭଲହେଲା" କିମ୍ବା "ନା' ନା' ଠିକ୍ ହେଲା ନାଇଁ"ରେ ସୀମିତ ରହିବ ।

ଏ ଆଲୋଚନାର ମୂଳ ଉଦ୍ଦେଶ୍ୟ ହେଲା, ଆଦୌ କିଛି କହିବି ନାହିଁ ବୋଲି ଚୁପ ହୋଇ ବସିଥିବା ନୃତ୍ୟବିଦ୍ ମାନଙ୍କୁ ଏବଂ ନୃତ୍ୟ ବିଶାରଦମାନଙ୍କୁ ବିରକ୍ତ କରିବା, ତାଙ୍କ ପାଟି ଖୋଲିବା ପାଇଁ ଉପାଦାନ ଯୋଗାଇବା । ତାହା ହେଲେ ହିଁ କୋଶଲୀ ନୃତ୍ୟ ଶୈଳୀର ନୂଆ ଯୁଗ ଆରମ୍ଭ ହେବ ।

*(ବଲାଙ୍ଗୀର ଲୋକଉତ୍ସବ ସ୍ମରଣିକା-୨୦୦୨)*

# ପଶ୍ଚିମ ଓଡିଶାର ସାଂସ୍କୃତିକ ବିଭବ
## (ବଲାଙ୍ଗୀର ଏକ କ୍ଷେତ୍ରୀୟ ଅଧ୍ୟୟନ)

ଜିଲ୍ଲାୱାରି ସାଂସ୍କୃତିକ ବିଭବ ଅନ୍ୱେଷଣ ଏକ ବିଫଳ ଓ ଅବାନ୍ତର ପ୍ରସ୍ତାବ। ସଂସ୍କୃତିର ମୂଳ ଏକକ ଜାତି ଭାଷିକ ସଂପ୍ରଦାୟ କିମ୍ବା ବହୁକାଳ ରାଜନୈତିକ ଶାସନାଧୀନ ଭୌଗୋଳିକ ଅଞ୍ଚଳ ହୋଇପାରେ। ବଲାଙ୍ଗୀର ଜିଲ୍ଲା ଏଇ ପ୍ରାୟ ୫୨ ବର୍ଷର ପରିଚିତ। ପୁଣି ତାହା ସୋନପୁର ବଲାଙ୍ଗୀର ରେ ବିଭକ୍ତ ହୋଇଛି ପ୍ରାୟ ୧୦ ବର୍ଷ ତଳେ। ଏବେ ବଲାଙ୍ଗୀର ର ସାଂସ୍କୃତିକ ବିଭବ କହିଲେ ଏଇ ଦଶବର୍ଷ ତଳର ବଲାଙ୍ଗୀର ଜିଲ୍ଲାର କଥାହିଁ ମନକୁ ଆସେ। ସଂସ୍କୃତିର ଆଲୋଚନା କିନ୍ତୁ ଏଇ ଦୃଷ୍ଟିଭଙ୍ଗୀରେ ସଂଭବ ନୁହେଁ। ଫଳରେ ଆଜିର ଆଲୋଚନାକୁ ଆମେ ପ୍ରାଚୀନ କୋଶଳ ବା ଆଧୁନିକ ପଶ୍ଚିମ ଓଡିଶାର ସାଂସ୍କୃତିକ ବିଭବ ଏବଂ ଏଇ ପ୍ରସଙ୍ଗରେ ଆଧୁନିକ ବଲାଙ୍ଗୀର ଜିଲ୍ଲାର କଥା କହିବା। ଆବଶ୍ୟକ ଅନୁସାରେ ସାଂସ୍କୃତିକ ବିଭବ ଓ ବୈଚିତ୍ର୍ୟର କାରଣ ଖୋଜିବା ପାଇଁ ଇତିହାସର ଆଶ୍ରୟ ନେବା। ଏ ଆଲୋଚନାରେ କେହି ଜଣେ ଯଦି ସଂସ୍କୃତିର ବିବର୍ତ୍ତନ ଖୋଜନ୍ତି, ହତାଶ ହେବେ। ପୁଣି ହତାଶ ହେବେ କେହି ଯଦି ବଲାଙ୍ଗୀର ଜିଲ୍ଲାର ସମସ୍ତ ସାଂସ୍କୃତିକ ବିଭବ ଓ ବୈଚିତ୍ର୍ୟର ଆଶା କରନ୍ତି। ଏହା ଆଧୁନିକ ବଲାଙ୍ଗିର ର ସାଂସ୍କୃତିକ ବିଭବର ମୌଳିକ ସୂତ୍ର ଆବିଷ୍କାର ର ଚେଷ୍ଟା ମାତ୍ର।

କୌଣସି ଏକ ମାନବୀୟ ସଂସ୍କୃତି ଗଢି ଉଠେ ସେ ଅଂଚଳର ଭୌଗୋଳିକ ଆବଶ୍ୟକତା, ସାମାଜିକ ପରିସ୍ଥିତି, ରାଜନୈତିକ ସହଯୋଗ, ଆର୍ଥିକ ସଂବୃଦ୍ଧି ଏବଂ ସର୍ବୋପରି ମାନବୀୟ ମୂଲ୍ୟବୋଧ ପ୍ରତି ଅଭୀପ୍ସାରୁ। ଏଣୁ ସବୁ ସଂସ୍କୃତିରେ ବର୍ତ୍ତମାନ ପାଇଁ ବଂଚିବା, ରହିବା ଏବଂ ଭବିଷ୍ୟତରେ ବଂଚିରହିବାର ସ୍ୱପ୍ନ ରହିଥାଏ। ପ୍ରାଗ୍

ଐତିହାସିକ କାଳରୁ ବିଭିନ୍ନ ଜନଜାତିଙ୍କ ଜୀବନଶୈଳୀ, ଚଳଣି, ଚାହାଣି ଓ ଚମକପ୍ରଦ ସାଂସ୍କୃତିକ ଅଭିବ୍ୟକ୍ତିରେ ଏ ଅଞ୍ଚଳର ବୈଶିଷ୍ଟ୍ୟ ପ୍ରକାଶ ପାଇଆସିଛି । ଏ ଜନଜାତି ମାନଙ୍କର ସାଂସ୍କୃତିକ ଜୀବନଯାପନ ପାଇଁ ରହିଥିଲା ଏକ ନିଜସ୍ୱ ଭାଷା ଓ ତାର ସ୍ୱତନ୍ତ୍ର ପ୍ରକାଶଭଙ୍ଗୀ, ଏହା ସହ ସେଇ ପ୍ରାଗ୍ ଐତିହାସିକ କାଳରୁ ଆର୍ଯ୍ୟ ଜନଜାତିର ସମୃଦ୍ଧ ସାଂସ୍କୃତିକ ଜୀବନଶୈଳୀ ସହ ଏହାର ସଂଘର୍ଷ ଓ ସମନ୍ୱୟ ଘଟିଚାଲିଥିଲା, ସେଦିନରୁ ଆଜିଯାଏ ଏମିତି ଘଟି ଘଟି ଚାଲିଛି । କେତେବେଳେ ଆର୍ଯ୍ୟମାନଙ୍କର ଲିଖିତ, ଅମୂର୍ତ୍ତ, ଆଦର୍ଶବାଦୀ ମହତ୍ତର ସଂସ୍କୃତି (Great tradition) ପ୍ରତି ଉନ୍ମୁଖ ହୋଇଛି, ଏ ଅଞ୍ଚଳର ସଂସ୍କୃତି, ତ କେତେବେଳେ ଏହା ଅଲିଖିତ , ମୂର୍ତ୍ତ, ବାସ୍ତବବାଦୀ, ଜନଜାତିମାନଙ୍କର ତଥାକଥିତ କ୍ଷୁଦ୍ରତ୍ତର ସଂସ୍କୃତି (Little tradition) ପ୍ରତି ଉନ୍ମୁଖ ହୋଇଛି । ସମଗ୍ର ପଶ୍ଚିମ ଓଡିଶାର ସାଂସ୍କୃତିକ ବିଭବର ଏହାହିଁ ମୂଳ ସୂତ୍ର । ଏହା ହିଁ ଆର୍ଯ୍ୟ ଓ ଅପର ଜନଜାତିର ସଂଘର୍ଷ ଓ ସହାବସ୍ଥାନର କଥା । ଏ ପ୍ରସଙ୍ଗରେ ଆଧୁନିକ ବଲାଙ୍ଗିର ଓ ପ୍ରାଚୀନ ପାଟଣା ରାଜ୍ୟ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଏହାର ଭୌଗୋଳିକ ଅବସ୍ଥିତି ଏବଂ ପ୍ରାଚୀନ ଜନପଦ ବ୍ୟବସ୍ଥା ଏଥିପାଇଁ ଦାୟୀ । ଆପଣମାନେ ସମସ୍ତେ ଜାଣନ୍ତି ଖ୍ରୀଷ୍ଟପୁର୍ବ କାଳରୁ, ଏମିତିକି ବୁଦ୍ଧପୂର୍ବ କାଳରୁ ଏଅଂଚଳକୁ ଆର୍ଯ୍ୟ ଆଗମନ ଘଟିଥିଲା । ବାଣିଜ୍ୟ ବ୍ୟବସାୟରେ କୋଶଳ ଏକ ସମୃଦ୍ଧ ରାଜ୍ୟ ଥିଲା । ଜାତକ କାହାଣୀରେ, ବୁଦ୍ଧ ଗାଥା ମାନଙ୍କରେ, ପରେ ପାଣିନୀଙ୍କ ଅଷ୍ଟଧ୍ୟାୟୀରେ, ଅଶୋକଙ୍କ ଅନୁଶାସନ, ସମୁଦ୍ରଗୁପ୍ତଙ୍କ ଦକ୍ଷିଣାତ୍ୟ ବିଜୟ, ଏ ସମସ୍ତ ସୂଚାଇ ଦିଏ ମହାକାନ୍ତାର ଆଟ୍‌ବିକ ଜନରାଜ୍ୟ ଏବଂ ମହାନଦୀର ମଧ୍ୟଦେଶରେ ଏକ ସମୃଦ୍ଧ ଦେଶ ଥିଲା । ଯାହା ଆଧୁନିକ ବଲାଙ୍ଗିର, ନୂଆପଡା, ଖରିଆଡ, ଟିଟିଲାଗଡ, ଅଞ୍ଚଳ । ବାଣିଜ୍ୟ ଓ ସାମରିକ ଅଭିଯାନ ଏଇ ପଥ ଦେଇ ହିଁ ମଧ୍ୟଭାରତରୁ ଉତ୍କଳକୁ, କଳିଙ୍ଗକୁ ଏମିତିକି ଦୂରତର ଦାକ୍ଷିଣାତ୍ୟକୁ ସଂଭବ ହେଉଥିଲା । ଏମିତିକି ଦଶମ ଶତାବ୍ଦୀ ଯାଏଁ ଏହାହିଁ ଥିଲା, ଉତ୍ତର ଓ ମଧ୍ୟଭାରତରୁ ଉତ୍କଳକୁ ଏକ ମାତ୍ର ସ୍ଥଳପଥ । ଫଳରେ ଏ ଅଞ୍ଚଳର ସାଂସ୍କୃତିକ ଇତିହାସ ସେଇ ପ୍ରାଚୀନ ଐତିହ୍ୟର ଉତ୍ତରାଧିକାରୀ ।

ସମୟକ୍ରମେ ମଧ୍ୟଯୁଗରେ ଚୌହାନ ବଂଶର ରାଜତ୍ୱ କାଳରେ ଏବଂ ତାର ପୂର୍ବରୁ ସୋମବଂଶୀମାନଙ୍କ ସମୟରେ ଆଧୁନିକ ପାଟଣାଗଡ, ବିନୀତ ପୁର, ସୋନପୁର, ସମଗ୍ର ପଶ୍ଚିମ ଓଡିଶାର ଶାସନ କେନ୍ଦ୍ର ହୋଇଥିଲା । ମୂଳରୁ କହିଛି ଶାସନ ସହ ସଂସ୍କୃତି ଅଙ୍ଗାଙ୍ଗୀ ଭାବେ ଜଡିତ । ଶାସନ ବ୍ୟବସ୍ଥା ହିଁ ସଂସ୍କୃତିକୁ ସ୍ୱୀକୃତି ଓ ଦୂରଦୃଷ୍ଟି ଦେବା ଓ ପରିବର୍ତ୍ତନ କରିବାର ସାମର୍ଥ୍ୟ ରଖେ । ଦୀର୍ଘ କାଳଧରି ପ୍ରାଚୀନ ପାଟଣା ରାଜ୍ୟ ଆଧୁନିକ ବଲାଙ୍ଗୀର କୈନ୍ଦ୍ରିକ ଶାସନବ୍ୟବସ୍ଥା, ଆଧୁନିକ ନୂଆପଡା, ସୋନପୁର, ବଉଦ, କୋରାପୁଟରୁ ଆରମ୍ଭ କରି ସମ୍ବଲପୁର, ସୁନ୍ଦରଗଡ ଯାଏ ଏକ ବିଶାଳ ଅଂଚଳକୁ ନିୟନ୍ତ୍ରଣ କରୁଥିଲା । ଏ ପ୍ରସଙ୍ଗରେ ଆପଣମାନେ ସମସ୍ତେ ଜାଣନ୍ତି ସୋନପୁର, ସମ୍ବଲପୁର ଏବଂ ଖରିଆଡର ରାଜବଂଶ ପାଟଣା ଚୌହାନ ରାଜବଂଶର ଏକ ଏକ ଶାଖା ମାତ୍ର । ଏ ରାଜବଂଶମାନଙ୍କ ଦେଇ ଯେଉଁ ସଂସ୍କୃତିଟି ସମଗ୍ର ପଶ୍ଚିମ ଓଡିଶାରେ ଗଢି ଉଠିଥିଲା । ସେ ସଂସ୍କୃତିର ହିଁ ଆମେ ସମସ୍ତେ ଉତ୍ତରାଧିକାରୀ । ଆପଣମାନେ ମତେ ମଧ୍ୟଯୁଗୀୟ ରାଜଭକ୍ତ ଭାବନ୍ତୁ ନାହିଁ । ସଂସ୍କୃତିର ଉତ୍ତରୋତ୍ତର ଉନ୍ନତି ପାଇଁ କ୍ଷମତା କେନ୍ଦ୍ରର ହିଁ ଭୂମିକା ସର୍ବାଧିକ ଏବଂ ସେ କାଳର ଚତୁର ରାଜା ମାନେ ଜନ ସଂସ୍କୃତିକୁ ରାଜକୀୟ ସଂସ୍କୃତିର ସ୍ୱୀକୃତି ଦେଇ କ୍ଷମତା ବିକାଶର ନୂଆ ନୂଆ ଉପାୟ ଉଦ୍ଭାବନ କରୁଥିଲେ । ଏଣୁ, ବହୁ ଐତିହାସିକ ଓ ଆଲୋଚକ ସ୍ୱୀକାର କରନ୍ତି ପଶ୍ଚିମ ଓଡିଶାର ରାଜବଂଶରେ ପ୍ରଚଳିତ ମିଥ ଗୁଡିକ ଶାସକୀୟ କ୍ଷମତାର ବିକେନ୍ଦ୍ରୀକରଣ ଏବଂ ଏକାଧିପତ୍ୟ ବିସ୍ତାର ପାଇଁ ବ୍ୟବହୃତ ଶାସକୀୟ ଚତୁର ବୁଦ୍ଧିର ଫଳ । କଳାହାଣ୍ଡିର ମାଣିକେଶ୍ୱରୀ, ପାଟଣାଗଡର ପାଟଣେଶ୍ୱରୀ, ସୋନପୁରର ସୁରେଶ୍ୱରୀ, ସମ୍ବଲପୁରର ସମଲେଇ ଇତ୍ୟାଦି ମନ୍ଦିରର ପୂଜକ, ପୂଜା ପରଂପରା ଏବଂ ରାଜବଂଶର ଯେଉଁ ସଂପର୍କ ରହିଛି, ମାତୃକୈନ୍ଦ୍ରିକ ଜନଜାତିମାନଙ୍କୁ ଆକର୍ଷିତ କରିବା ପାଇଁ ଏବଂ ସେମାନଙ୍କ ବିଶ୍ୱାସକୁ ରାଜଭକ୍ତିରେ ରୂପାନ୍ତରିତ କରିବା ପାଇଁ ଏମିତି କି ରାଜଧର୍ମରେ ରୂପାନ୍ତରିତ କରିବା ପାଇଁ ଧର୍ମକୁ ବ୍ୟବହାର କରାଯାଇଛି, ଏହା ନିର୍ବିବାଦରେ କୁହାଯାଇପାରେ । ବୁଦ୍ଧ ଧର୍ମର ତାନ୍ତ୍ରିକତା ଓ ପ୍ରାଚୀନ ଜନଜାତି ଜୀବନର ମାତୃକୈନ୍ଦ୍ରିକ ଶାକ୍ତ ଧର୍ମ ଏ ଅଞ୍ଚଳର ରାଜଧର୍ମ

ହେଲାବେଳେ କେମିତି ହିନ୍ଦୁ ଆର୍ଯ୍ୟାୟିତ ହୋଇଛି ତାହା ସମସ୍ତେ ଜାଣନ୍ତି । ସମଗ୍ର ଭାରତରେ ଏ ଅଞ୍ଚଳରେ ହିଁ ଦେଖିବାକୁ ମିଳେ ଶିବ, ଦୁର୍ଗା, ଚଣ୍ଡୀ, ପରି ହିନ୍ଦୁ ଦେବା ଦେବୀ ମାନେ କାଳିସୀ ହୋଇ ମଣିଷ ଦେହରେ ଆବିଷ୍ଟ ହୁଅନ୍ତି । ହିନ୍ଦୁଧର୍ମର ମୂଳପ୍ରକୃତି ହେଲା, ଦେବତାମାନେ ଶକ୍ତି ରୂପରେ ଆବିର୍ଭାବ ହୁଅନ୍ତି, ଅବତାର ଗ୍ରହଣ କରନ୍ତି । କିମ୍ବା ଶୂନ୍ୟବାଣୀ, ସ୍ୱପ୍ନାଦେଶ ଦିଅନ୍ତି । କେବେବି ମଣିଷକୁ ମାଧ୍ୟମକରି ଆବିଷ୍ଟ ହୁଅନ୍ତି ନାହିଁ । ଏ ଅଂଚଳର ଧାର୍ମିକ ଧାରଣାରେ କିନ୍ତୁ ଏହା ସଂଭବ । ଆଦିବାସୀ ଦିଅଁ ଦେବୀ ଯେମିତି ଆର୍ଯ୍ୟାୟିତ ହୋଇ ସ୍ତମ୍ଭେଶ୍ୱରୀ, ଲଙ୍କେଶ୍ୱରୀ, ସମଲେଶ୍ୱରୀ ହୋଇଛନ୍ତି ଠିକ୍ ସେମିତି ହିନ୍ଦୁ ଦେବଦେବୀ ବି ଅନାର୍ଯ୍ୟାୟିତ ହୋଇ କାଳିସୀ ନାଚୁଛନ୍ତି । ଆଦିବାସୀ ଦେବୀମାନେ ରାଜଧର୍ମର ଦେବୀ ହୋଇ ମଣିଷ ପରି ଷୋଡଶ ଉପଚାରରେ ପୂଜା ହେଲାବେଳେ ହିନ୍ଦୁଦେବୀମାନେ ମନ୍ତ୍ରଶୂନ୍ୟ, କେବଳ ସମର୍ପଣ ପୂଜା ପାଉଛନ୍ତି । ଆମ ଅଂଚଳ ସଂସ୍କୃତିର ଏହାହିଁ ବୈଶିଷ୍ଟ୍ୟ ଓ ବିଚିତ୍ରତା ।

ଏ ପ୍ରସଂଗରେ ହରିଶଂକର ଓ ନରସିଂହନାଥ ସଂପର୍କୀୟ ମିଥ୍‌କୁ ବିଶ୍ଳେଷଣ କଲେ କେତେକ ନୂତନ ତଥ୍ୟ ଆଲୋକକୁ ଆସେ । ହିନ୍ଦୁଧର୍ମରେ ନୃସିଂହ ଉପାସନା ଥିଲେହେଁ ନରସିଂହନାଥର ନରସିଂହ ସେଇ ଅବତାରର ପ୍ରତିଭୂ ନୁହଁନ୍ତି । ମୁଷିକ ଦୈତ୍ୟକୁ ପରାଭୂତ କରିବାପାଇଁ ଭଗବାନ ରାମଚନ୍ଦ୍ରଙ୍କର ଏହା ବିଡାଳ-ନୃସିଂହ ଅବତାର । ଏ ଅବତାରର ସୃଷ୍ଟି ପ୍ରକ୍ରିୟାକୁ ବିଶ୍ଳେଷଣ କଲେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ କଥା ଆଖିରେ ପଡ଼େ । ମହାଶକ୍ତି ଦୁର୍ଗା ଓ ତାଙ୍କ ଯୋଗିନୀଗଣ ମୁଷିକଦୈତ୍ୟ ଦ୍ୱାରା ପରାସ୍ତ ହେଲାପରେ :

କାନ୍ଦ କାନ୍ଦ ହୋଇ ଦେବୀ ଉଠିଣ ବସିଲେ
କଳାମେଘ ଜାଣି କି ସେ ଚନ୍ଦ୍ରମା ଲୁଚିଲେ ।
ଆଖି ଥନଥନ ଯେ କରିଣ ମହାମାଇ
ପଳାଇଣ ଗଲେ ଦେବୀ ପଛକୁ ନ ଚାହିଁ ।।

(ଶ୍ରୀ ନୃସିଂହ ଚରିତ ପଦ - ୫୧୨, ୫୧୩) ।

ସୂଚାଇ ଦିଏ ଶାକ୍ତଧର୍ମ ଉପରେ ବୈଷ୍ଣବ ଧର୍ମର ବିଜୟ । ପୁଣି ବୈଷ୍ଣବ ଧର୍ମର ଶୈବଧର୍ମ ସହ ସହାବସ୍ଥାନ୍ ହରିଶଙ୍କର ମନ୍ଦିର ନିର୍ମାଣ ଓ ହରିଶଙ୍କର କାହାଣୀରୁ ପ୍ରମାଣ ମିଳେ। ଏ ସମସ୍ତ ମିଥ୍ ଭିତରେ ଦୁଇଟି କଥା ଗୁରୁତ୍ୱପୂର୍ଣ୍ଣ । ୧) ଆଦିବାସୀ ଜନବହୁଳ ଏ ଅଂଚଳରେ ହିନ୍ଦୁ ପୌରାଣିକ ଆଖ୍ୟାୟିକାର ପ୍ରଚାର ଏବଂ ତାହା ମାଧ୍ୟମରେ ଆର୍ଯ୍ୟ ଦେବଦେବୀଙ୍କର ସ୍ୱୀକୃତି ପ୍ରଦାନ। ଯେମିତି ହରିଶବର ଓ ଯମୁନା କନ୍ଧୁଣୀ କାହାଣୀ ମାଧ୍ୟମରେ ଆର୍ଯ୍ୟ ଦେବତାଙ୍କ ମହିମା ପ୍ରଖ୍ୟାପନ। ପୁଣି ଶିବଙ୍କ ଗୋହତ୍ୟା ପାତକରୁ ମୁକ୍ତିପାଇଁ ନୃସିଂହନାଥ ଯାତ୍ରା, ଭୀମ ମଡୁଆ ପ୍ରସଂଗ, ସୀତା ଓ ରାମଚନ୍ଦ୍ର ପ୍ରସଂଗ ଇତ୍ୟାଦି । ୨) ବୌଦ୍ଧ ସଂସ୍କୃତିର ଅବକ୍ଷୟକୁ ହିନ୍ଦୁକରଣ ଯେମିତି ଭୈରୋବେତାଳ। ବିଭିନ୍ନ ବୌଦ୍ଧ ଦେବଦେବୀଙ୍କୁ ଯୋଗିନୀରୂପେ ଚିତ୍ରଣ ଇତ୍ୟାଦି।

ନୃସିଂହନାଥ ସଂପର୍କୀୟ ମିଥ୍‌ରେ ଆଉ ଏକ କଥା ମହତ୍ତ୍ୱପୂର୍ଣ୍ଣ। ନୃସିଂହ ନାଥଙ୍କ ସୃଷ୍ଟିବେଳେ ସମସ୍ତ ଦେବଦେବୀ ରାମଚନ୍ଦ୍ରଙ୍କ ଶରୀରରେ ପ୍ରବେଶ କଲେ ଏବଂ ରାମଚନ୍ଦ୍ର ବ୍ୟାଘ୍ର ରୂପ ଧାରଣ କଲେ। ଗୋଟିଏ ପଟେ ଦୁର୍ଗାଦେବୀଙ୍କ ପରାସ୍ତ ମାଧ୍ୟମରେ ଶାକ୍ତ ବିଶ୍ୱାସକୁ ଯେମିତି ପରାହତ କରାହେଲା, ଅନ୍ୟପଟେ ଭଗବାନ ଶ୍ରୀ ରାମଚନ୍ଦ୍ର ଦୁର୍ଗାଦେବୀଙ୍କୁ ସୁମରଣା କରିବାରୁ ଶାକ୍ତ ସାମର୍ଥ୍ୟକୁ ସ୍ୱୀକାର ମଧ୍ୟ କରାହେଲା:

“ ଦୁର୍ଗାଙ୍କୁ ସୁମରଣା କଲେ ରାମଚନ୍ଦ୍ର
ପ୍ରସନ୍ନ ହୋଇଲେ ଦୁର୍ଗା ସଙ୍ଗେ ଦେବୀ ବୃନ୍ଦ
ଦେବୀମାନେ ବସିବାରୁ ଦିଶିଲେ ବିକରାଳ
ରକ୍ତବର୍ଣ୍ଣ ଆଖି କିବା ଜଳଇ ଅନଳ । ( ନୃସିଂହ ମହାତ୍ମ୍ୟ ପଦ-୬୩୦)

ହରିଶଙ୍କର ଓ ନୃସିଂହନାଥ ସଂପର୍କୀୟ ମିଥ୍ ହିଁ ଏ ଅଂଚଳର ସଂସ୍କୃତିକୁ ବୁଝିବା ଦ୍ୱିତୀୟ ସୂତ୍ର। ଠିକ୍ ସେମିତି କରମା କାହାଣୀ, ବିଭିନ୍ନ ବ୍ରତକଥାର କାହାଣୀ, ଯାତ୍ରା ଓ ସ୍ଥାନୀୟ କିମ୍ବଦନ୍ତୀ ମାନଙ୍କୁ ବିଶ୍ଳେଷଣ କଲେ ଭିନ୍ନ ଭିନ୍ନ ସମୟରେ ଏ ଘଟଣାର ପୁନରାବୃତ୍ତି ହିଁ ପ୍ରମାଣିତ ହୁଏ। ପଶ୍ଚିମ ଓଡ଼ିଶାର ସଂସ୍କୃତିର ବିଶେଷତା ହେଲା ଆପଣା ଆପଣାର ସାଂସ୍କୃତିକ ଅସ୍ମିତାକୁ ଭୁଲି ଏଠାରେ ଆର୍ଯ୍ୟ ଓ ଅପର

ଜନଜାତି ମାନେ ନୂଆଁ ଏକ ସାଂସ୍କୃତିକ ଅସ୍ମିତା ସୃଷ୍ଟିକରି ପାରିଛନ୍ତି। ଏବେ ଆଉ ସଂଘର୍ଷ ନାହିଁ। ସମନ୍ୱୟ ଓ ସହାବସ୍ଥାନର ସଂସ୍କୃତି ଏ ଅଂଚଳରେ ବିକଶିତ ନୂତନ ସାଂସ୍କୃତିକ ଧର୍ମ।

ସାଂସ୍କୃତିକ ଧର୍ମ ପରି ଭାଷାର ମଧ୍ୟ ସଂସ୍କୃତିର ବିକାଶରେ ପ୍ରଧାନ ଭୂମିକା ରହିଛି। ଭାଷା ହିଁ ତ ସଂସ୍କୃତିକୁ ସଂଚିତ କରିରଖେ। ଭାଷା ମାଧ୍ୟମରେହିଁ ସଂସ୍କୃତି ବ୍ୟକ୍ତିଠାରୁ ବ୍ୟକ୍ତି ନିକଟକୁ, ପୁଣି ସମୟରୁ ସମୟକୁ, ସ୍ଥାନରୁ ସ୍ଥାନକୁ ସଂଚରି ଯାଏ। ଆଜି ପଶ୍ଚିମ ଓଡ଼ିଶାରେ ଯେଉଁ ନୂଆଁ ଏକ ଭାଷାର ବିକାଶ ଘଟିଛି ତାହା ମଧ୍ୟ ଏଇ ସାଂସ୍କୃତିକ ସହାବସ୍ଥାନର ଫଳ। ଆର୍ଯ୍ୟ ଓ ଅନ୍ୟ ଜନଜାତି ମଧ୍ୟରେ ଭାଷିକ ଆଦାନପ୍ରଦାନ ପାଇଁ ଏକ ଏକ ସମ୍ମିଶ୍ରିତ ଭାଷା ସୃଷ୍ଟିହୋଇଛି। ଉତ୍ତର-ପଶ୍ଚିମ ଓଡ଼ିଶାରେ ସୃଷ୍ଟି ହୋଇଛି, ସାଦ୍ରି, ଦକ୍ଷିଣ ପଶ୍ଚିମ ଓଡ଼ିଶାରେ ସୃଷ୍ଟି ହୋଇଛି ଦେଶିଆ ଏବଂ କେନ୍ଦ୍ର ପଶ୍ଚିମ ଓଡ଼ିଶାରେ ସୃଷ୍ଟିହୋଇଛି କୋସଲି-ସମ୍ବଲପୁରୀ। ଏଇ ତିନୋଟି ଭାଷାର ସୃଷ୍ଟି ପ୍ରକ୍ରିୟାର ମୌଳିକଗୁଣ ସହାବସ୍ଥାନ ଓ ସମନ୍ୱୟ। ଉଭୟ ସାଦ୍ରୀ ଓ ଦେଶିଆରେ ଆଦିବାସୀ ଭାଷାର ପ୍ରଭାବର ଆନୁପାତିକତା ଅଧିକ ଥିବାବେଳେ କୋସଲୀ-ସମ୍ବଲପୁରୀରେ ଏହାକମ୍। ଏହା ଏତେ କମ୍ ଯେ ବେଳେବେଳେ କିଛି କିଛି ଉତ୍ସାହୀ ଭାଷାବିତ୍ ଏହାକୁ ଓଡ଼ିଆର ଉପଭାଷା କହିବାପାଇଁ ମଧ୍ୟ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ। ଯଦି ଐତିହାସିକ ଦୃଷ୍ଟିରୁ ବିଚାର କରାଯାଏ, ଓଡ଼ିଆ ଭାଷାର ସୃଷ୍ଟି ଆଗରୁ କମ୍‌ରେ କମ୍ ଦୁଇଶହ/ତିନିଶହ ବର୍ଷ ଆଗରୁ ବଲାଙ୍ଗୀରର ସୋମବଂଶୀ ରାଜା ଓ ଚୌହାନ୍ ରାଜତ୍ୱ କାଳରେ ଆଜିର କୋଶଳୀ ଭାଷାର ପ୍ରତ୍ନରୂପ ଆରଂଭ ହୋଇସାରିଥିଲା। ସେ ଦିନର ଭାଷାର ପ୍ରକୃତି ନିଶ୍ଚୟ ଆଜିର ଦେଶିଆ ଓ ସାଦ୍ରିପରି ଥିଲା। କିନ୍ତୁ ମଧ୍ୟଯୁଗରେ ବଲାଙ୍ଗୀର, ସମ୍ବଲପୁର, ସୋନପୁର ଅଂଚଳ ଅଧିକ ଆର୍ଯ୍ୟାୟିତ ହେଲା ଏବଂ ପରେ ପରେ ଆଧୁନିକ ଓଡ଼ିଆ ଭାଷାଦ୍ୱାରା ପ୍ରଭାବିତ ହୋଇ ତାର ମୂଳ ସ୍ୱରୂପ ହରାଇ ହରାଇ ଚାଲିଲା। ଏବେ କିଛି ବର୍ଷ ହେଲା ଭାଷିକ ଅସ୍ମିତା ପ୍ରତି ଆସକ୍ତି ଓ ଆଗ୍ରହ ପ୍ରକାଶ ପାଇବାରୁ ସିନା ଆମ ଭାଷିକ ସଂସ୍କୃତିର ସଂଗ୍ରହ ଓ ସୁରକ୍ଷା ବିଷୟରେ ତତ୍‌ପରତା ଦେଖାଯାଉଛି। ଏ ବିଷୟରେ ଗୋଟିଏ କଥା ନ କହିଲେ ଏକାନ୍ତ

ଅଯୌକ୍ତିକ ହେବ। ପଂଚଦଶ ଶତାବ୍ଦୀ ଠାରୁ ଆଜିଯାଏଁ କ୍ରମାଗତ ଭାବରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଘାତପ୍ରତିଘାତ ସହି ଏ ଅଂଚଳର ସାହିତ୍ୟ ଓ ସଂସ୍କୃତି ପ୍ରଭୃତ ଜୀବନୀଶକ୍ତିର ପ୍ରମାଣ ଦେଇସାରିଛି। ଆଜି ଏହାର ସାଂସ୍କୃତିକ ବୈଶିଷ୍ଟ୍ୟ ଓ ବୈଭବ ଖୋଜିବା ବେଳେ ଆମେ କେତୋଟି କଥା ପ୍ରତି ସତର୍କ ରହିବା ଏକାନ୍ତ ଆବଶ୍ୟକ। ପ୍ରଥମତଃ ଏହାର ମୌଳିକ ପ୍ରକୃତିରେ ପଶ୍ଚିମ ଓଡ଼ିଶାର ବିଭିନ୍ନ ଜନଜାତିର ଉତ୍ତରାଧିକାର ଯେମିତି ଅକ୍ଷୁର୍ଣ୍ଣ ରହେ। ଆର୍ଯ୍ୟ ସୁଲଭ ସାଂସ୍କୃତିକ ବଡ଼ପଣିଆ ଏ ଭାଷାକୁ ଯେମିତି ଅଧିକ ସଂସ୍କୃତନିଷ୍ଠ ନ କରେ। ଏ ବିଷୟରେ ଆମର ଅଧିକ ସହାୟକ ହେବ ଦେଶିଆ ଓ ସାଦ୍ରି । ଏ ତିନୋଟି ଭାଷାକୁ ନେଇ ଯଦି ଆମେ ଆର୍ଯ୍ୟ ଓ ଅପର ଜନଜାତି ମାନଙ୍କ ସଂଶ୍ଳେଷଣରେ ଗଠିତ ମାନକ ଭାଷାଟିଏ ସୃଷ୍ଟି କରିପାରିବା ତାହାହିଁ ହେବ ଏ ଅଂଚଳର ମୌଳିକ ସାଂସ୍କୃତିକ ଚରିତ୍ରର ଅନୁରୂପ। ଦ୍ୱିତୀୟତଃ ଆମ ଭାଷିକ ପରଂପରାକୁ ମୁକ୍ତରଖି ଆମକୁ ବର୍ତ୍ତମାନର ପରିସ୍ଥିତି ସହ ତାଳ ମିଳେଇ ଭାଷାକୁ ପରିବର୍ତ୍ତନ କରିବାକୁ ହେବ, ନ ହେଲେ ଭାଷା ଓ ସଂସ୍କୃତି ପରସ୍ପର ଠାରୁ ଦୂରେଇ ଯାଇ ଏକ ବିଷମ ପରିସ୍ଥିତି ସୃଷ୍ଟି କରିବ। ତୃତୀୟତଃ ସଂସ୍କୃତିର ଭାଷିକ ରୂପାନ୍ତରଣ ସହ ଯେଉଁ ସାହିତ୍ୟ ସୃଷ୍ଟିହେବ ସେଥିରେ ଆମର ଆଂଚଳିକ ଅସ୍ମିତା ପ୍ରତି ଅଧିକ ଧ୍ୟାନ ଦେବା ଉଚିତ୍। ଏ ପ୍ରସଙ୍ଗରେ କ୍ଷୋଭର ସହ କହିବାକୁ ପଡୁଛି ଯେ, ବଲାଙ୍ଗୀର ସମେତ ପଶ୍ଚିମ ଓଡ଼ିଶାରେ ଶତାଧିକ ସାହିତ୍ୟିକ ଥିଲେ ହେଁ ଖୁବ୍ କମ୍ ସାହିତ୍ୟିକ ଆମର ସାଂସ୍କୃତିକ ବୈଶିଷ୍ଟ୍ୟର ଯଥାର୍ଥ ରୂପକାର ।

ଭାଷା ଓ ସାହିତ୍ୟ ଛଡ଼ା ନୃତ୍ୟ, ବାଦ୍ୟ ଚିତ୍ରକଳା ପରି ନୈର୍ଭାଷିକ ଅଭିବ୍ୟକ୍ତିର ମାଧ୍ୟମରେ ବେଳେବେଳେ ସଂସ୍କୃତି ଆତ୍ମପ୍ରକାଶ କରେ। ଏ ପ୍ରସଙ୍ଗରେ ଆମ ଅଂଚଳର ନୃତ୍ୟ ଓ ଗୀତର ଛନ୍ଦରେ, ବାଦ୍ୟ ଓ ଚିତ୍ରରେ କଣ ବିଶେଷତା ରହିଛି ଏହା ନିଶ୍ଚୟ ଆଲୋଚିତ ହେବାକଥା। ରାଉରକେଲାରୁ ଷଷ୍ଠ ବେଦବ୍ୟାସ ସଂଗୀତ ନୃତ୍ୟୋତ୍ସବ ଅବସରରେ ପ୍ରକାଶିତ ସ୍ମରଣିକାରେ ଏ ଲେଖକ ଏକ ପ୍ରସ୍ତାବ ଦେଇଛି। ଆମ ନୃତ୍ୟର ବିଶେଷତା କଣ, ଆମ ବାଦ୍ୟର ମୌଳିକତା କେଉଁଠି ପୁଣି ଏହାର ଐତିହାସିକ କାରଣ କଣ ? ଆର୍ଯ୍ୟ ଜନଜୀବନରେ ଇତିହାସ ଏକ ପ୍ରମୁଖ ଭୂମିକା ରଖେ।

ପ୍ରାଚୀନ ଘଟଣାମାନଙ୍କୁ ଅଭିନୟ ମାଧ୍ୟମରେ ତୋଳିଧରି ଆର୍ଯ୍ୟମାନେ ମନେକରନ୍ତି ଇତିହାସର ଗତି ସରଳରୈଖିକ । ଏଣୁ ଆର୍ଯ୍ୟମାନଙ୍କ ନୃତ୍ୟରେ ପ୍ରାଚୀନ ଘଟଣାକୁ ଅନୁକରଣ କରି ଅଭିନୟର ହିଁ ଗୁରୁତ୍ୱ ଅଧିକ। ଅଭିନୟ ଅଭିବ୍ୟକ୍ତି ମାନଙ୍କର ଅନୁକରଣ। ଆମ ଅଂଚଳର ନୃତ୍ୟରେ ତାହା ବଲାଙ୍ଗିର ହେଉ ବା କୋରାପୁଟ, ବରଗଡ଼ ହେଉ ବା ଦେବଗଡ଼, ଏଠି ନୃତ୍ୟ ହିଁ ଅଧିକ, ଉଲ୍ଲାସ ହିଁ ଅଧିକ, ବାଦ୍ୟ ହିଁ ଅଧିବ। କମ୍ ଗୀତ, କମ୍ ଅଭିନୟ। ଆମ ନୃତ୍ୟ ଓ ବାଦ୍ୟର ଏଇ ବିଶେଷତା ସୁଚେଇଦିଏ ଆମ ଜୀବନ ବର୍ତ୍ତମାନ ସର୍ବସ୍ୱ। ପଶ୍ଚିମ ଓଡ଼ିଶାର ଲୋକଗୀତରେ ଝୁମେର ଓ ଛଉ, ଘୁମରା ଓ ଗଉର ବାଡ଼ି, ରସରକେଲି ଓ ଡାଲଖାଇ, କରମା ଓ ନଚନିଆଁ। ଏ ସମସ୍ତର ଶୈଳୀ ଭିନ୍ନଭିନ୍ନ ହୋଇପାରେ, କିନ୍ତୁ ଗୋଟିଏ କଥା ସମାନ। ତାହାହେଲା ନୃତ୍ୟକାରୀକୁ କିଛି ବିରତି ଦେବାପାଇଁ ଆସେ ଗୀତ। ଗୀତର ଭାବକୁ ନେଇ ନୃତ୍ୟକାରୀ ଅଭିନୟ କରେ ନାହିଁ। ବାଦ୍ୟର ତାଳ ଦେଇ ହିଁ ସେ ଆପଣାର ଉଲ୍ଲାସକୁ ନୃତ୍ତ ମାଧ୍ୟମରେ ପ୍ରକାଶ କରେ । ବାଦ୍ୟ ଓ ନୃତ୍ୟରୁହିଁ ଦର୍ଶକ ନିକଟକୁ ଲହଁକି ଯାଏ ରସ। ଅଭିନୟ ଲୋଡାପଡ଼େନା, ଏହାହିଁ ଆମରି ନୃତ୍ୟ। ଚିତ୍ରକଳାରେ ଆମେ ଯଦିଓ ଆଜିଯାଏଁ ଏକ ସ୍ୱତନ୍ତ୍ର ଶୈଳୀର ଉଦ୍‌ଭାବନ କରିପାରିନାହୁଁ ତଥାପି ଅନେକ ସଂଭାବନା ଉନ୍ମୁକ୍ତ ରହିଛି। ସୌରା ପେଣ୍ଟିଂର ବିଭିନ୍ନ ଶୈଳୀ ସହ ଆମ ବାନ୍ଧ ବସ୍ତ୍ରଶୈଳୀର ସମ୍ମିଶ୍ରଣରେ ଆମେ ଏକ ନୂଆଁ ଅଭିବ୍ୟକ୍ତିର ମାଧ୍ୟମ ଖୋଜିପାଇବା। ଏସବୁ କ୍ଷେତ୍ରରେ ଗୋଟିଏ କଥା ମନେରଖିବାକୁ ହେବ ସମନ୍ୱୟ ହିଁ ଆମର ସଂସ୍କୃତି।

ବଂଧୁଗଣ, ଆପଣ ଆଶା ରଖିଥିବେ ବଲାଙ୍ଗିରର ବିଭିନ୍ନ ଗ୍ରାମରେ, ବିଭିନ୍ନ ଅଂଚଳରେ ଯେଉଁ ସାଂସ୍କୃତିକ ବିଭବ ରହିଛି, ତାର ଏକ ତାଲିକା ମୁଁ ପ୍ରଦାନ କରିବି। ଆଉଥିରେ କହୁଛି ମୋ ବିଚାରରେ ଏହାର ଆବଶ୍ୟକତା ନାହିଁ। ବଲାଙ୍ଗିରରେ ଯାହା ରହିଛି, ପଶ୍ଚିମ ଓଡ଼ିଶାର ଅନ୍ୟ ଅଂଚଳରେ ମଧ୍ୟ କମ୍ ବେଶି ପରିମାଣରେ ତାହା ରହିଛି। ତାର ବିଭିନ୍ନତା ନୁହେଁ, ତାର ସମାନତା ଆମକୁ ଖୋଜିବାକୁ ହେବ । ତାର ଏକ ମାନକ ରୂପ ଆମକୁ ପ୍ରସ୍ତୁତ କରିବାକୁ ହେବ। ଆମ ଧର୍ମୀୟତାର ପ୍ରକୃତି ଖୋଜିବାକୁ ହେବ, ଆମ ଚଳଣୀର ଚମକ ଖୋଜିବାକୁ ହେବ, ଖୋଜିବାକୁ ହେବ

ଆମ ନୃତ୍ୟଗୀତର ବ୍ୟାକରଣ, ଭାଷାର ଉଦ୍‌ବୋଧନ ଶକ୍ତି, ସର୍ବୋପରି ଏତେ ଦୀର୍ଘକାଳର ସଂଘର୍ଷଶୀଳ ଏକ ସଂସ୍କୃତିର ମୂଳ ଜୀବନୀ ଶକ୍ତି। ଏଥିପାଇଁ ଦରକାର ପଡ଼ିପାରେ, ଇତିହାସର ତଥ୍ୟ, ଦରକାର ପଡ଼ିପାରେ, ତତ୍‌ବିଦ୍ ମାନଙ୍କର ଅଧିକରୁ ଅଧିକ ଉନ୍ମୁକ୍ତ ଆଲୋଚନା। କିନ୍ତୁ ତା ଠୁ ବି ଅଧିକ ଦରକାର ଆମ ସମସ୍ତଙ୍କର ସାଂସ୍କୃତିକ ଅସ୍ମିତା ଖୋଜିବା ପାଇଁ ଦୃଢ଼ ସଂକଳ୍ପ ଓ ଇଚ୍ଛାଶକ୍ତି। ମୁଁ ଆପଣମାନଙ୍କ ଠାରେ କୃତଜ୍ଞ ଦୁଇଟି କାରଣରୁ। ପ୍ରଥମତଃ ଏମିତି ଏକ ଆଲୋଚନାର ଆରଂଭ ଆପଣମାନେ କରିଛନ୍ତି ସମୟ ଓ ସଦିଚ୍ଛା ଦେଇ। ଦ୍ୱିତୀୟତଃ ଏତେ ଶ୍ରଦ୍ଧାସହ ଏସବୁକୁ ଶୁଣି ଚର୍ଚ୍ଚା ପାଇଁ ଉନ୍ମୁକ୍ତ ରଖିଛନ୍ତି। ଏ ଅବସରରେ ଗୋଟିଏ କଥା କହି ମୁଁ ମୋର ବକ୍ତବ୍ୟ ଶେଷ କରିବି। କୌଣସି ଏକ ଆଲୋଚନା, ଶେଷ କଥା ନୁହେଁ। ଶେଷକଥା ହେବା ଆଦୌ ଉଚିତ୍ ନୁହେଁ । ରାଜନୀତିକ ବିଚାର ମଂଚ ମାନଙ୍କରେ ସହମତିରେ କୌଣସି କଥା ସରିଗଲେ ମନେହୁଏ ଏହା ସଫଳ ହେଲା । କିନ୍ତୁ କୌଣସି ଏକ ଆଲୋଚନା ଚକ୍ରରେ ଭିନ୍ନଭିନ୍ନ ମତ ପ୍ରକାଶ ପାଇଲେ ହିଁ ବିଷୟଟିର ଗାମ୍ଭୀର୍ଯ୍ୟ ବଢ଼େ। ଆଗାମୀ ଦିନରେ ଏ ସଂପର୍କରେ ଚର୍ଚ୍ଚା ଜାରି ରହେ, ନୂତନ ତଥ୍ୟ ପ୍ରକାଶିତ ହୁଏ, ତାପରେ ହିଁ ଆମେ ସତ୍ୟର ନିକଟବର୍ତ୍ତୀ ହେଉଁ । ଆପଣ ମାନଙ୍କୁ ପୁଣିଥରେ ଧନ୍ୟବାଦ ।

*(ସମ୍ବଲପୁର ଲୋକ ଉତ୍ସବ-୨୦୦୩ର ସମ୍ମାନରେ ପଠିତ ଓ ଆଲୋଚିତ)*





ଡକ୍ଟର ସଂତୋଷ କୁମାର ରଥ (୧୯୬୦)

ଓଡ଼ିଆ ଆଲୋଚନା ସାହିତ୍ୟର ଜଣେ ପଥିକୃତ ଆଲୋଚକ ।

ତାଙ୍କ ସମ୍ପାଦିତ 'ଅଲୌକିକ ଦର୍ପଣ' ଏବଂ

'ଓଡ଼ିଆ ଉପନ୍ୟାସର ଶିଳ୍ପରୀତି: ଫକୀରମୋହନ'

ପରେ 'ଅସ୍ୱୀକୃତ ପରମ୍ପରା' ଓଡ଼ିଆ ଆଲୋଚନାରେ ନୂଆ

ଧାରା ପ୍ରବର୍ତ୍ତନ ପାଇଁ ସମର୍ଥ ।

* ଅନୁରାଗ ପ୍ରକାଶନ *